# ଯେମିତି କାମ ସେମିତି ଫଳ



ଶ୍ରୀମତୀ ଶରତ କୁମାରୀ ସ୍ୱାଇଁ

# ଯେମିତି କାମ ସେମିତି ଫଳ

କ୍ଷୁଦ୍ରଗଳ୍ପ ସଙ୍କଳନ

ଲେଖିକା : ଶ୍ରୀମତୀ ଶରତ କୁମାରୀ ସ୍ୱାଇଁ

ପ୍ରକାଶନ: ମିକି ପବ୍ଲିକେସନ୍

ପ୍ରକାଶିକା: ରକ୍ମିଣୀ ସ୍ୱାଇଁ , ଭୁବନେଶ୍ୱର- ୧୩



ମୁଦ୍ରଣ: ଅପୂର୍ବା ଅଫ୍‌ସେଟ୍, କଟକ- ୧୨

ପ୍ରଥମ ପ୍ରକାଶ : ଡିସେମ୍ବର, ୧୯୯୭

ପ୍ରଚ୍ଛଦ ଓ ଅଳଂକରଣ : ଶଶୀକାନ୍ତ ରାଉତ

ମୂଲ୍ୟ : ପନ୍ଦର ଟଂକା

# JEMITI KAMA SEMITI PHALA

(Short Stories for Children )

Writer : Smt. Sarat Kumari Swain

Publisher : Micky Publication

Published by: Rukmini Swain

Bhubaneswar-13

Printed at : Apurba off-set, Cuttack-12

First Edition : Dec., 1997

Cover and Illustration : Sashikanta Rout

Cost : Rs 15/- ( Fifteen Only)

ବାପା,

ତୁମ ମୁହଁ ମୋର ମନେ ନାହିଁ।
ତୁମକୁ ଚିହ୍ନିବା ଓ ତୁମ ମୁହଁକୁ
ମନେରଖିବା ଆଗରୁ ତୁମେ ଚାଲିଯାଇଛ
ଆଉ ପାରିଲି, ତେଣୁ ତୁମ ପାଇଁ
ଏହି ବହିଟି ମୋର ଆଜି ଗୋଟିଏ ଛୋଟିଆ
ଉପହାର........

ତୁମ ଝିଅ

# ଲେଖକୀୟ



ମଣିଷ ଏପୃଥିବୀର ଶ୍ରେଷ୍ଠ ପ୍ରାଣୀ । ତା' ବୋଲିଅନ୍ୟାନ୍ୟ ଜୀବ ଜନ୍ତୁଙ୍କୁ ନିହାତି ହେୟ ମନେକରିବା ଠିକ୍‌ନୁହେଁ । କାରଣ ଅଧିକାଂଶ ସମୟରେ ସାଧାରଣ ପଶୁପକ୍ଷୀଙ୍କ ଠାରୁ ବି ମଣିଷ ଛୋଟ ପାଲଟି ଯାଏ । ନିଜ କାର୍ଯ୍ୟ, ଚରିତ୍ର ଓ ବ୍ୟବହାରରେ ଇତର ଜୀବଜନ୍ତୁଙ୍କ ଭଲଗୁଣକୁ ଅନୁକରଣ ନକରି କେବଳ ଦୁର୍ଗୁଣ ଗୁଡିକୁ ଗ୍ରହଣ କରି ଜୀବନକୁ ଅସୁନ୍ଦର କରି ପକାଏ । ତେଣୁ ପୃଥିବୀକୁ ଭଲ କରି ଚିହ୍ନିନଥିବା ଶିଶୁ ମାନଙ୍କୁ ସେହି ଛୋଟ ଛୋଟ ପ୍ରାଣୀମାନଙ୍କ ଦୋଷ ଓ ଗୁଣ ସବୁ ଚିହ୍ନେଇ ଦେବାକୁ ଏହି ପୁସ୍ତକର ଗଳ୍ପ ଗୁଡିକ ମାଧମରେ ଚେଷ୍ଟା କରିଛି । ତାହା ଯଦି ଶିଶୁ ମନକୁ ଛୁଇଁ ସେମାନଙ୍କ ଆଚରଣକୁ ଶୁଦ୍ଧ କରିପାରେ, ତେବେ ଶ୍ରମ ସାର୍ଥକ ହେବ ।

ଅପୂର୍ବା ତରଫରୁ ଶ୍ରଦ୍ଧେୟ କ୍ଷୀରୋଦ ଚନ୍ଦ୍ର ପତି ଏହି 'ଯେମିତି କାମ ସେମିତି ଫଳ' ଗଳ୍ପ ପୁସ୍ତକର ପ୍ରକାଶନରେ ଅନେକ ଶ୍ରମ ସ୍ୱୀକାର ଓ ସହାୟତା କରିଥିବାରୁ ମୁଁ ତାଙ୍କ ପାଖରେ ଋଣୀ । ଏଥିରେ ସନ୍ନିବେଶିତ ଗଳ୍ପ ଗୁଡ଼ିକ୍ ପୂର୍ବରୁ ଆକାଶବାଣୀ, କଟକ କେନ୍ଦ୍ରରୁ ପ୍ରସାରିତ ହେବା ସହ ବିଭିନ୍ନ ସମୟରେ ଶିଶୁ ଓ କିଶୋର ପତ୍ରିକା 'ମୀନା ବଜାର', 'ଶିଶୁ ଲେଖା' , 'ଝୁମୁକା' ଓ 'ସଂସାର' ଇତ୍ୟାଦିରେ ପ୍ରକାଶ ପାଇଛି । ଏଣୁ ଏହି ଅବସରରେ ଆକାଶବାଣୀର କର୍ତ୍ତୃପକ୍ଷଙ୍କ ସହିତ ସେହି ପତ୍ରିକାର ସମ୍ପାଦକ ଓ ସମ୍ପାଦିକା ମାନଙ୍କୁ ମଧ୍ୟ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ।

ଲେଖିକା



# ସୂଚୀପତ୍ର

| ବିଷୟ | ପୃଷ୍ଠା |
| --- | --- |




# ଆପଣା ଦୋଷେ ପ୍ରାଣୀ ମରେ



ରାତିଟା ସାରା କାକୁଡି ଆଉ ତରଭୁଜ କିଆରୀରୁ ବୁଲା କାଳିଆ ଷଣ୍ଢକୁ ତଡ଼ି ତଡ଼ି ଭାଲୁଆ ଭାରି ହାଲିଆ ହୋଇଯାଇଥିଲା । ନିଦୁଆ ଆଖିପତା ଦୁଇଟା ବୁଜିହୋଇ ଆସୁଥିଲେ ବି ସକାଳୁ ସକାଳୁ ମାଟି ଛେଲୁଆରେ ଢ଼ଙ୍କା ହୋଇଥିବା ବାସି ପଖାଳ ମୁଠାକ ଦେଖି ଏକା ନିଃଶ୍ୱାସରେ ଗିଳି ପକାଇଲା ସେ । ଝୋଲାମରା ଦେହରେ ତା'ର ସତରେ ଯେମିତି ଜୀବନ ପଶିଗଲା । ଭାବିଲା ଥିର୍ କରି ଯାଇ କୁଟାଗଦା କଡ଼ରେ ଭଲକରି ଘଡ଼ିଏ ଶୋଇଯିବ । ନିଦ ଭାଙ୍ଗିଲେ ଆଉ ଯାହା କାମ । ହେଲେ ଶୋଇବ କେମିତି ! ମୁଦୁଲି ଘର ନାଲି ଗାଈଟା ସକାଳ ପହରୁ ତା'ସାଙ୍ଗରେ ବାଦ ଲଗେଇଛି । ଥରକୁ ଥର କେଇଥର ତାକୁ କାକୁଡ଼ି କିଆରୀ ପାରିକରି ଦେଇ ଆସିଲାଣି । ହେଲେ ଭାଲୁଆ ଆସି କୁଟାଗଦା ପାଖେ ପହଞ୍ଚିଛି କି ନାହିଁ–ସେ ପୁଣି ଆସି କାକୁଡ଼ି କିଆରୀରେ ହାଜର । ଯାହାହେଉ, ଏଥର ତାକୁ ପୋଖରୀହୁଡ଼ା ପାରି କରିଦେଇ ଆସିଛି । କାହିଁ, ଘଡ଼ିଏ ହେଲାଣି ତା'ର ତ ଆଉ ଦେଖାନାହିଁ । ପୋଖରୀ କଡ଼ର ଛନଛନିଆ ଦଳରେ ବୋଧେ ମନ ଲାଗିଯାଇଛି କି କ'ଣ, ପେଟ ପୂରିଲେ ଯାଇ ଉଠିବ ।

ଶାନ୍ତିରେ ଲମ୍ବା ନିଃଶ୍ୱାସଟାଏ ଛାଡ଼ି ଭାଲୁଆ ଅଳସେଇ ଅଳସେଇ ହାଇ ମାରୁ ମାରୁ ଗଳିଗଲା ଅନ୍ଧାରୁଆ ଘସିଭାଡ଼ି ତଳକୁ । ଆଃ...ସୁଲୁ ସୁଲିଆ ଚଇତି ପବନରେ ମହମହ ଚମ୍ପା ଫୁଲର ବାସନା । ଖରା ବାଜି ଝରିଯାଇଥିବା କାମିନୀ ଫୁଲର ବାସ ସାରା ବାଡ଼ିଟାକୁ ମହକେଇ ଦେଉଛି । ଲମ୍ବା ଲମ୍ବା ଦୁଇ ଚାରିଟା ନିଃଶ୍ୱାସ ନେଇ ଭାଲୁଆ ବେଶ୍ ଆରାମ୍‌ରେ ଶୋଇଗଲା ।

ନିଦଟା ଘମାଘୋଟ ଲାଗି ଆସୁଥିବା ବେଳେ ଚାଉଁକିନା ହୋଇଗଲା ତା' ଦେହଟା । ଛଟପଟ ହୋଇ କିଏ ଗୋଟାଏ ଗଡୁଥିବାର ଶବ୍ଦ ଶୁଣି ଚମକି ପଡ଼ିଲା ସେ । ଧଡ଼ ପଡ଼ ହୋଇ ଚାରିଆଡ଼କୁ ଚାହିଁଲା । କାହିଁ... କେହି କୁଆଡ଼େ ଦିଶୁ ନାହାଁନ୍ତି ତ ! ତଥାପି ଭାଡ଼ିତଳୁ ମୁହଁ ଗଳେଇ ଏଣେତେଣେ ଚାହିଁଲା ସେ । ଆରେ, ଇଏତ ତାଙ୍କରି ଶଙ୍ଖୀ ବିରାଡ଼ି ! ଗୋଡ଼ ଚାରିଟାକୁ ଛଟଛଟ କରି ଏମିତି ବିକଳରେ ଗଡୁଛି କାହିଁକି ? କ'ଣ ହେଲା ତା'ର ? କିଛି ବୁଝି ପାରିଲାନି ଭାଲୁଆ । ତରତରରେ ଘଟଣା କ'ଣ ଜାଣିବାକୁ ଭାଡ଼ିତଳୁ ବାହାରି ଆସିଲା ବେଳକୁ ମନେ ପଡ଼ିଗଲା, ଶଙ୍ଖୀ ସାଙ୍ଗରେ ପରା ତା'ର ଅପଡ଼ ! କେତେ ଦିନରୁ କଥାବାର୍ତ୍ତା ବନ୍ଦ । କେମିତି ଯିବ ସେ !

ପଛକୁ ଘୁଞ୍ଚି ଆସିଲା ଭାଲୁଆ । ଏଇ ଶଙ୍ଖୀ, ଛାର ବିରାଡ଼ିଟା । କେତେ କଥା ତାକୁ ସେଦିନ ନ କହିଛି ? ଘିଅ ଘଡ଼ିରୁ ଅଧା ଘିଅ ପିଇ ସେଦିନ ବଡ଼ ବେଖାତିର୍‌ରେ ଧାନଗଦା କଡ଼ରେ ମୁହଁ ଚାଟୁଥିଲା ସେ । ସେଇବାଟରେ ଚାଲି ଯାଉ ଯାଉ ପଦଟାଏ ଖାଲି ଥଟ୍ଟାରେ ଭାଲୁଆ ପଚାରିଦେଲା : ''କ'ଣ ଶୁଖୁଆ ମାଛ କିଛି ମିଳିଗଲା କି ? ମନଟା ତ ତୋର ଭାରିଖୁସି .... ।''

ଡ଼ିମାଡ଼ିମା ଆଖି ଦେଖାଇ ନିଶକୁ ଫୁଲେଇ ଶଙ୍ଖୀ କହିଲା: 'ହଁ ମାଛ, ଶୁଖୁଆ ତ ନିତି ଖାଉଛି । ତୁ ତ ଅଛୁଆଁଟା । ଘର ବାହାରେ ଖରା, ବରଷାରେ ସବୁବେଳେ ପଡ଼ିଛୁ । ସେ ମଜା ତୁ ଜାଣିବୁ କେଉଁଠୁ ? ବୁଝିଲୁ, ତୁ ତୋ ଜୀବନସାରା ବି ଏସବୁ ଚାଖିପାରିବୁନି ।

ଶଙ୍ଖୀ କଥାଗୁଡ଼ାକ ଭାଲୁଆକୁ ଭାରି ବାଜିଲା । ସେ ମୁହଁ ଛିଞ୍ଚାଡ଼ି କହିଲା : ଯା..ଯା... ଲୁଚେଇକରି ଖାଇବା ତ ଚୋରି ସଙ୍ଗେ ସମାନ । ନିଇତି ଚୋରେଇ ଲୁଚେଇ ଘିଅ, ଦୁଧ, ପିଠା, ପଣା, ମାଛ, ଶୁଖୁଆ କେତେ ଦିନ ଖାଇବୁ ? ଦିନେ ନିଶ୍ଚୟ ଧରାପଡ଼ିବୁ ।



ଲାଞ୍ଜ ହଲେଇ ହଲେଇ ଶଙ୍ଖୀ କହିଲା:ଆରେ, ଯାଆ..ଯାଆ.. ଯେତେ ଲୁଚେଇ ଖାଇଲେ ବି ମୁଁ ମାଲିକର ଗେହ୍ଲା । ଘୁଡୁରୁ ଘୁଡୁରୁ କରି ତାଙ୍କ ଦେହରେ ଘଷି ହୋଇଗଲେ, କେଡେ ଆଦରରେ ମୋ ପିଠିଟା ସାଉଁଳେଇ ଦିଅନ୍ତି ସେ । ହେଲେ ତୋତେ ତ ଘର ଦୁଆର ମନା । ଦାଣ୍ଡ ପାହାଚର ସେଇ କଡ଼ରେ ତୋ ଜାଗା । ତୁ ପୁଣି କହିବୁ କ'ଣ ?

ପାଖକୁ ଟିକିଏ ଆଗେଇ ଆସି ଭାଲୁଆ କହିଲା, ବାହାରେ ରହିଲେ ବି ଘର ଭିତରେ କ'ଣ ଅଛି ଜାଣିବାକୁ ମୁଁ କେବେ ବିକଳ ହୁଏନି । ମାଲିକ, ମାଲିକାଣୀ ଯାହା ଖାଇବାକୁ ଦିଅନ୍ତି ଖୁସିରେ ଖାଏ । ଯାହାର ଖାଉଛି, ତା' ଋଣ ତ ଶୁଝିବି .. ତେଣୁ ରାତିସାରା ଉଜାଗର ରହି ଘର ଜଗେ । ଦିନ ତମାମ ଗୋରୁ, ଗାଈ, ମେଣ୍ଢା, ଛେଳି, ଅଚିହ୍ନା ମଣିଷ କାହାରିକୁ ବାରି ଘରେ ପୂରାଇ ଦିଏନି । ମୋ କାମରେ ମୁଁ ଖୁସି । ମାଲିକ ବି ଖୁସି । ତୋ'ପରି କାମରେ ଠକିବାକୁ ମୋତେ ଜମା ଭଲ ଲାଗେନି । କାମ ତୋର ସିନା ମୂଷା ମାରିବା; ହେଲେ, ଚୋରେଇ କରି ଖାଇ ତୋର ତ ପେଟ ପୂରୁଚି, ଆଉ ମୂଷା ମାରି ଖାଇବୁ କ'ଣ ? ଦେଖୁନୁ, ମୂଷା ଗୁଡ଼ାକ ତାଡ଼ି ତୁଡ଼ି ମାଲିକର ଘରଦ୍ୱାର ନାରଖାର କରିଦେଲେଣି ।

ଭାଲୁଆ କଥା ଶୁଣି ଖିଙ୍କାରି ଉଠିଲା ଶଙ୍ଖୀ । କହିଲା: 'ତୋ'ର ତ ଭାରି ସାହସ ! ମୋତେ ପୁଣି କହୁଛୁ ଠକ ! ହଇରେ, ତୁ ନିଜେ ପରା ଦେଖିଛୁ ସେଦିନ ଧାନଗଦା କଡ଼ରୁ ଏତେ ବଡ଼ ମୂଷାଟାଏ ଏକା ଖେପାରେ ମାଡ଼ି ବସିଲି ।'

ହସିଦେଇ ଭାଲୁଆ କହିଲା: ଛା'ଡ଼େ, 'ଛା'ଡ଼େ.. ଅକାଳେ ସକାଳେ ଗୋଟାଏ ମୂଷା ମାରିଦେଲୁ ଯେ ମନେ ମନେ ଭାରି ବଡ଼ କାମଟାଏ କରି ପକେଇଲୁ ! ସତରେ ଯେମିତି ଘରୁ ମୂଷା ଗୁଡ଼ାକ ମୂଳପୋଛ ହୋଇଗଲେ । ତୋର ତ ମଉଜ ମଜଲିସରେ ମନ । କାମ ନକରି ଏଘର ସେଘର ବୁଲୁଛୁ । କରିବୁ ଆଉ କ'ଣ ? ମାଲିକଙ୍କ ପୁଅ ଦୁହିଁଙ୍କ ଭିତରେ ବି ଏଇ ପ୍ରକୃତି ପଶିଗଲାଣି । ତୁ କ'ଣ ଜାଣିନୁ ? ଗଲା ରବିବାର ଦିନ ମାଲିକ କେମିତି ମନ ଖରାପ କରି ଉପବାସ ରହିଲେ...ତାଙ୍କ ପୁଅ ମୁନା -ଆଉ କୁନା ହରି ଅଜାଙ୍କ ବାଡ଼ିରୁ ପିଜୁଳି ତୋଳି ଆଣିଲେ ଯେ ହରି ଅଜା ଗାଳି ଦେଇ ଦେଇ ମାଲିକଙ୍କ ଆଗରେ ଫେରାଦ ହେଲେ ।

କେତେ କାଣ୍ଡ ହେଲା । ଶେଷରେ ବୁଝିଲା ବେଳକୁ-କୁନା, ମୁନା ଏକା ନୁହଁନ୍ତି । ତାଙ୍କ ସାଙ୍ଗରେ ପଡ଼ିଶା ଘରର ଲୁଲା, ଚୁଲା ଆଉ ବାବୁନା ସମସ୍ତେ ଥିଲେ । ଆଜିକାଲି ଏ ମଣିଷ ଛୁଆଗୁଡ଼ାକ ବି ସବୁକଥାରେ ଏମିତି। ଦିନରେ ଘଣ୍ଟେ ଅଧଘଣ୍ଟାଏ ପାଠ ପଢୁଛନ୍ତି କି ନାହିଁ ମଉଜ ମଜଲିସ୍, ସାଙ୍ଗସାଥୀ, ରେଡିଓ, ଟି.ଭି ,ବାଜେଗପ ଓ କଳିଗୋଳରେ ମାତିଛନ୍ତି । କାମ ନ କରି ଭଲ ଖାଇବାରେ ଭାରି ମନ। ହେଲେ ଅଳସୁଆ ହୋଇ, ଭଲ ଖାଇ ମଉଜ ମଜଲିସ୍‌ରେ ଜୀବନ ସାରା କ'ଣ ଚଳିହେବ ? ବସି ଖାଇଲେ ନଈବାଲି ପରା ସରିଯିବ । ନିଜେ ପରିଶ୍ରମ କରି ନଜାଣିଲେ, ଠିକ୍ ଭାବେ ନିଜ କାମ ନ କଲେ, ବାପ ମାଆଙ୍କ ପରେ ଚଳିବ କେମିତି? ବୁଝିଲୁ ଶଙ୍ଖୀ ! ତୋ କଥା ବି ସେଇମତି । ଗତକାଲି ମାଲିକାଣୀ, ମାଲିକଙ୍କୁ ମୂଷାମରା ବିଷ ଆଣିବାକୁ କହୁଥିଲେ । ତୁ ତ ମୂଷା ମାରିଲୁନି । ତତେ ଆଉ ରଖିବେ କାହିଁକି ? ନିଶ୍ଚୟ ଘରୁ ବାହାର କରିଦେବେ ।

ଭାଲୁଆ କଥା ଶୁଣି ରାଗରେ ଚମକି ଆସି ଶଙ୍ଖୀ କହିଲା: 'ଯା..ଯା..କାମିକା ଦେଖେଇ ହେଉଛି । ମୋ ସୁଖ ଦେଖି ସହିପାରୁନୁ ତ, ଏମିତି କହୁଛୁ।'

ଭାଲୁଆ ବିଚରା ଆଉ କିଛି ନକହି ମୁହଁକୁ ବୁଲେଇ ଚାଲେଇ ଆସିଲା ତା ପାଖରୁ। ସେଇଦିନଠାରୁ ତା' ସାଙ୍ଗରେ ତା'ର ଅପଡ଼ । କଥାବାର୍ତ୍ତା ବି ବନ୍ଦ । ହେଲେ, ଆଜି ଏମିତି ଭୂଇଁ ଉପରେ ବିକଳ ହୋଇ ଶଙ୍ଖୀ ଗଡୁଛି କାହିଁକି ? ମନଟା ଥୟ ହେଲାନି ତା'ର । ରାଗ ସବୁକୁ ଭୁଲି ପାଖକୁ ଯାଇ ପଚାରିଲା : କ'ଣ ହେଲା ଶଙ୍ଖୀ ? ଏମିତି ବାଡ଼େଇ ପିଟି ହେଉଛୁ କାହିଁକି ?

ଶଙ୍ଖୀର ପାଟି ଖନି ମାରି ଯାଉଥାଏ । ତୁଣ୍ଡ ବି ଠିକ୍ ଖୋଲୁ ନଥାଏ । ଶେଷକୁ ଅଙ୍ଗେଇ ଅଙ୍ଗେଇ କହିଲା : ବିହନ ଭାଡ଼ିତଳେ

ଥୁଆ ହୋଇଥିବା ନଡ଼ିଆ ଚକଟାରୁ ମେଞ୍ଚାଏ ଖାଇଦେଇଛି ତ ଦେହ କ'ଣ ହୋଇଯାଉଛି । ମୁଣ୍ଡ ବୁଲେଇ କାନମୁଣ୍ଡା ଝାଇଁ ଝାଇଁ ମାରିଯାଉଛି । ଦେହ ମୁଣ୍ଡ ଜଳି ଯାଉଛି ଯେମିତି ! ଆଖି ଆଗରେ ଖାଲି ଜାଲି ଜାଲିଆ ଅନ୍ଧାର ।



ବିକଳରେ ଭୂଇଁକୁ ରାମ୍ପୁଡ଼ି କାମୁଡ଼ି ପକାଉଥାଏ ଶଙ୍ଖୀ । ଠିକ୍ କଥାଟା ବୁଝିବାକୁ ଭାଲୁଆକୁ ଆଉ ମୋଟେ ବି ଡ଼େରି ଲାଗିଲାନି । ଶଙ୍ଖୀର ବିକଳ ଦେଖି , ମନକଷ୍ଟରେ ସେ ଖାଲି ଚୁ..ଚୁ..ହେଲା । ଭାବିଲା, ତା' ଟାଉକାପଣରୁ ସିନା ଏତେ ହିନସ୍ତା ହେଉଛି । ନହେଲେ ମୂଷାଙ୍କ ପାଇଁ ଥିବା ବିଷଗୋଳା ଖାଦ୍ୟ ସେ ଖାଆନ୍ତା କାହିଁକି ?

ଭାଲୁଆର ଆଖି ଦୁଇଟା ଲୁହ ଛଳ ଛଳ ହୋଇ ଆସିଲା । ଶଙ୍ଖୀର ଥରି ଉଠୁଥିବା ଦେହ ପାଖକୁ ଆଉ ଟିକିଏ ଲାଗିଆସି ସେ କହିଲା : ମୋ କଥା ମାନି ଯଦି ତୁ ଠିକ୍ ମୂଷା ମାରିଥାଆନ୍ତୁ, ମାଲିକ ମୂଷାଙ୍କ ପାଇଁ ବିଷ ରଖି ନଥା'ନ୍ତେ କି, ଏ ଦଶା ତୁ ଭୋଗି ନଥା'ନ୍ତୁ । ହେଲେ ଆଜିକାଲି ଭଲକଥା ବା ଶୁଣୁଛି କିଏ ? ଆଉ ସେଥିପାଇଁ ନିଜ ନିଜ କାମ ଅନୁସାରେ ସମସ୍ତେ ଫଳ ଭୋଗୁଛନ୍ତି ।



# ବୁଝି ବିଚାରି କାମ କର



କିଆପତ୍ରରୁ ଟପ୍‌ଟପ୍ ଖସୁଥିବା କାକର ବୁନ୍ଦାରେ ଜୁଡୁବୁଡୁ ଭିଜିଯିବା ପରେ ଟୁକିଁ ନେଉଳର ବଡ଼ ପୁଅ ଚୁଣ୍ଟା ଖପ୍‌କରି ଗାଡ଼ିଆ କଡ଼ରୁ ଚେଙ୍ଗଛୁଆଟୀକୁ ଧରି ପକେଇଲା । ଧଇଁ ସଇଁ ହୋଇ ବାଉଁଶ ଭାଡ଼ି ତଳକୁ ଧାଉଁଥିବାବେଳେ ଚୁଣ୍ଟା ମନେମନେ ଭାବୁଥିଲା - ସତରେ , ତା ମାଆ ଆଜି ଭାରି ଖୁସି ହେବ । ବାପା ମରିଯିବା ପରେ ଢ଼େର୍ ଦିନ ହେଲାଣି ବାଉଁଶଭାଡ଼ି ତଳୁ ମାଆ ଆଉ ପଦାକୁ ବାହାରିନି । ସବୁଦିନ କୁଜିଗେଣ୍ଡା ଖାଇଖାଇ ମନ ତା'ର ଚିଟା ଧରିଗଲାଣି । କେଇଥର ବି ଚୁଣ୍ଟାକୁ ମାଛ ଛୁଆଟିଏ ଆଣିବାକୁ ତୁଣ୍ଡ ଖୋଲି କହିଛି । ହେଲେ....ଆଜିକାଲି ମାଛଟିଏ ପାଇବା ବଡ଼ କଷ୍ଟ । ମାଛରଙ୍କା, ଗଙ୍ଗେଇ, ବଗ...ଏମାନଙ୍କ ପାଟିରୁ ବଞ୍ଚିଲେ ସିନା ନେଉଳ ଭାଗରେ ପଡ଼ିବ ... ଯା' ହେଉ... ଏତେ ଦିନରେ ଆଜି ଗୋଟାଏ ମାଛ ସିଏ ପାଇଛି ।

ତରତର ହୋଇ ବାଉଁଶ ଭାଡ଼ି ତଳକୁ ପଶୁପଶୁ ମାଆ ତା'ର ମୁଣ୍ଡଟେକିଅନେଇଲା । ଦେହରେ ବଳ ଥିଲେ ହୁଏତ ପାଖକୁ ଧାଇଁ ଆସିଥା'ନ୍ତା । ହେଲେ ଖାଲି ଲୋଭିଲା ଆଖିରେ ପୁଅ ପାଟିରେ ମାଛ ଛୁଆଟିକୁ ଚାହିଁ ରହିଲା ସିଏ । ଗୋଟାଏ ଗଡ଼ ଜିଣିଲା ପରି ଚେଙ୍ଗଛୁଆଟିକୁ ମାଆ ପାଖରେ ଥୋଇଦେଇ ଚୁଣ୍ଟା ଚାରି ଆଡ଼କୁ ନିରେଖି ଅନେଇଲା । 'ନା, .... କେହି କୁଆଡ଼େ ନାହିଁ । ' ମାଆ

ପାଖକୁ ଟିକିଏ ଲାଗିଆସି ତାଗିଦ୍ କରି କହିଲା, " ଜଲ୍‌ଦି ଜଲ୍‌ଦି ଖାଇଦେ.. ଯଦି ମୁଣ୍ଡା ଆସିଯିବ ନା ସବୁ ସରିଯିବ। "

ପୁଅକୁ ଭାରି ସ୍ନେହରେ ଆଉଁସୁ ଆଉଁସୁ ଚୁଙ୍କି ଖୁସିରେ ମାଛଟିକୁ ଘୋଷାରିନେଇ ଖାଇଲା । ଦୁଇ ଚାରି ପୁଳା ଖାଇ ସାରିବା ପରେ ପୁଅକୁ ପଚାରିଲା -- "ମୁଣ୍ଡା କୁଆଡ଼େ ଗଲା ? କାହିଁ, ଏ ଯାଏ ତ ଫେରିଲାନି ? "

ଚୁଣ୍ଡା ମୁହଁକୁ ଭାରି କରି କହିଲା-- "କ'ଣ ସକାଳ ବୁଲା ସରିଲାଣି ଯେ ଫେରିବ..? ହରଦମ୍ ତ ଖାଇପିଇ ବୁଲୁଛି। କାମ ନାହିଁ କି ଧନ୍ଦା ନାହିଁ। ଖେଳିବୁଲି ଦିନ କାଟିବାକୁ କ'ଣ କିଏ ମନା କରୁଛି? ହେଲେ, ନିଇତି ବାହାରେ କଳିଆଣି ଘରେ ପୁରାଉଛି ।"



ମାଛ କଣ୍ଟାଟିକୁ ଦୂରକୁ ଫିଙ୍ଗି ଦେଉ ଦେଉ ମାଆ କହିଲା-- "ବାପାଟୀ ପରା, ସାନ ଭାଇର ଦୋଷ ଧରିବୁ ନାହିଁ। ପିଲାଲୋକ, ବୁଦ୍ଧି ହୋଇଗଲେ ସେ ବଳେ ବୁଝିବନି ?

ରାତି ପାହାନ୍ତିରୁ ଧରି ଆଣିଥିବା କୁଜି ଗେଣ୍ଡା କେଇଟାକୁ

ଏକାଠି ରଖୁରଖୁ ମାଆକୁ ଚାହିଁ ଟୁଣ୍ଟା କହିଲା, " ଏଗୁଡ଼ାକ ଏଇଠି ରହିଲା - ମୁଣ୍ଟାକୁ କହିବୁ - ଖାଇବ । "

ଟୁଣ୍ଟା ପାଟିରୁ କଥା ନସରୁଣୁ ଧଇଁସଇଁ ହୋଇ ସାନଭାଇ ମୁଣ୍ଟା ବାଉଁଶ ଭାଡ଼ି ଭିତରକୁ ପଶିଆସିଲା । କୁଜି ଗେଣ୍ଡାଗୁଡ଼ାକୁ ଗୋଡ଼ରେ ଆଡ଼େଇ ଦେଇ ଭାଡ଼ି ତଳଟା ସାରା ଧୂନ୍ଦି ପକେଇଲା ସିଏ । ପଡ଼ିଥିବା ମାଛକଣ୍ଟାକୁ ଦେଖି ମାଛ ଖାଇବା ପାଇଁ ଲୋଭଟା ତା'ର ଖୁବ୍ ବଢି ଯାଇଥିଲା । ହେଲେ, ତାକୁ ଯେତେ ବୁଝାଇଲେ ବି ସିଏ ବୁଝୁଛି କେଉଁଠି ? ରାଗ ତମ ତମ ହୋଇ କହିଲା- "ତମେ ସବୁ ଖାଇବ ମାଛ, ଆଉ ମୋ ପାଇଁ ରଖିଛ କୁଜିଗେଣ୍ଡା ! "

ମୁଣ୍ଟାର କଥା ଶୁଣି ଟୁଣ୍ଟାର ରାଗଟା ବି କପାଳକୁ ଉଠିଗଲା । ବଙ୍କଟେ ପିଲା -କେମିତି ବଢିବଢି କଥା କହୁଛି ଦେଖ । ଆଗପଛ କିଛି ନଭାବି ମୁନିଆ ନଖରେ ରାମ୍ପୁଡ଼ି ପକେଇଲା ସିଏ ସାନଭାଇର ମୁହଁକୁ । ମୁଣ୍ଟାକୁ ବା ଆଉ ସମ୍ଭାଳି ହେଉଛି କେଉଁଠି ? ଖରାପ ସାଙ୍ଗଙ୍କ ସାଥିରେ ମିଶି ତା'ର ବି ଭଲ ମନ୍ଦ କିଛି ଭାବିବାର ବୁଦ୍ଧି ନଥିଲା । ତେଣୁ ବେକମୂଳର ଲୋମଗୁଡ଼ାକୁ ଫୁଲେଇ, ରାଗରେ ଆଖି ଲାଲ୍ କରି ସଙ୍ଗେ ସଙ୍ଗେ ସେ ଝାମ୍ପିପଡିଲା ବଡଭାଇ ଉପରକୁ । ରାମ୍ପୁଡ଼ା, କାମୁଡ଼ା, ଗଡ଼ାଗଡ଼ିରେ ଭାଡ଼ି ତଳଟା ବି ଉଠିଲା ପଡ଼ିଲା । ଓଦାମାଟିଗୁଡ଼ାକ ରାମ୍ପୁଡ଼ି ହୋଇ ଚାରିଆଡ଼କୁ ଛିଟିକି ପଡୁଥାଏ । ଦୁଇଭାଇଙ୍କ ମାଡ଼ଗୋଳ ଓ ଗର୍ଜନ ଶୁଣି-- ଚମ୍ପେଇ ନେଉଳ, ବଣୁଆ ମୂଷା, କୁଜି ଅସରପା, ଝିଟିପିଟି, ବୁଢ଼ିଆଣୀ- ଯିଏ ଯେଉଁଠି ଥିଲେ, ସମସ୍ତେ ଧାଇଁ ଆସିଲେ । ଦୁଇଜଣଙ୍କ ଗଡ଼ାଗଡ଼ି, କାମୁଡ଼ା କାମୁଡ଼ି, ରାମ୍ପୁଡ଼ା ରାମ୍ପୁଡ଼ିରେ -- ଭାଲୁଆ ମୂଷାଟା ଆଗଗୋଡ଼ ଟେକି ତାଳିମାରି ଖୁସି ହେଉଥାଏ । ଚମ୍ପେଇନେଉଳ ମଜାରେ ଲାଞ୍ଜ ପିଟୁ ପିଟୁ ଦେଖେଇ ଦେଖେଇ ଅସରପା ଆଉ ଝିଟିପିଟିକୁ କ'ଣ ସବୁ ବକିଯାଉଥାଏ ।

ଲାଞ୍ଜ ଫୁଲେଇ ଗୁଣ୍ଡୁଚିମୂଷାଟା ବି ଆମ୍ବଡ଼ାଳରୁ ତଳକୁ ଖସିଆସି ଚିଇଁ ଚିଇଁ ହୋଇ ଡ଼ାକ ଛାଡୁଥାଏ । ଗଲା କେଇଦିନ ହେଲା ମୁଷା ସାଙ୍ଗରେ ତା'ର ଭାରି ସାଙ୍ଗ । ଯେତେବେଳେ ମୁଷା ବଡ଼ଭାଇକୁ ତଳେ ଗଡ଼େଇ ଦେଉଥାଏ, ଗୁଣ୍ଡୁଚି ମୂଷା ତାଳିମାରି ଗଡ଼ିଯାଉଥାଏ ଖୁସିରେ । ଦୁଇଭାଇଙ୍କୁ ଲହୁ ଲୁହାଣ ହୋଇ ମାଡ଼ଗୋଳ ହେବା ଦେଖି ଦେଖଣାହାରିଙ୍କ ମନ ଭାରି ଖୁସି ।

ଏମିତି ଗଡ଼ାପଡ଼ା ଲାଗିଥିବା ବେଳେ ପ୍ରଧାନ ଅଜାଙ୍କ ସାନ ନାତି ନଟଖଟିଆଟା କୁଆଡୁ କେଜାଣି ଧାଇଁଆସି ଖପ୍‌କିନା ତା ଗାମୁଛାଟାକୁ ପକେଇଦେଲା ନେଉଳ ଦୁଇଟାଙ୍କ ଉପରେ । କୌଶଳରେ ଚୁଷା ସିନା ଖସିଗଲା, ହେଲେ ରାଗରେ ସବୁକିଛି ଭୁଲିଯାଇଥିବା ମୁଷା ଗାମୁଛାରେ ଗୁଡ଼େଇ ପୁଡ଼େଇହୋଇ ଛନ୍ଦି ହୋଇଗଲା । ନଟ୍‌ଖଟିଆର ଆନନ୍ଦ ଆଉ କହିଲେ ନ ସରେ । ଦୁଇହାତରେ ଗାମୁଛାମିଶା ନେଉଳଟାକୁ ଉଠେଇ ଆଣିଲା ସିଏ । ଗାମୁଛା ଭିତ ରେ ଥାଇ ମୁଷା ଭାବୁଥାଏ- ଓଃ, ଏ ମଣିଷଟା ଏଡ଼େ ନିର୍ଦ୍ଦୟ ! କେତେ ଜୋର୍‌ରେ ଦେହଟାକୁ ଚାପିଧରିଛି.. !

ମୁଷାକୁ ବିକଳ ହେଉଥିବାର ଦେଖି ଭାଲୁଆ ମୂଷାଟା ମନ ଖୁସିରେ କହିଲା -- ''ଠିକ୍ ହେଲା । ସେଦିନ ସକାଳୁ ସକାଳୁ କୁଜି ଗେଣ୍ଡା କେଇଟାକୁ ମୋ ଖାଇବା ମୁହଁରୁ ଛଡ଼େଇନେଇ ମୋ'ରି ଆଗରେ ରଡ଼ ରଡ଼ କରି ଚୋବାଇଗଲା ! ଖାଲି ଡ଼ହଳବିକଳ ହୋଇ ମୁଁ ଅନେଇ ଥାଏ । ''

ମୂଷା କଥା ନସରୁଣୁ କୁଜିଅସରପା କହିଲା-- ''ଏଇଟାର କ'ଣ କମ୍ ଉତ୍ପାତ.... ମତେ ବି ଢେର୍ ହରକତ କରିଛି । ମୋ ଜୀବନ କ'ଣ ଆଉ ଥାଆନ୍ତା.. ଖଣ୍ଡି ଡ଼େଣାକୁ ମେଲେଇ କଣ୍ଟାବୁଦାକୁ ଉଡ଼ିଗଲି ବୋଲି ବଞ୍ଚିଗଲି । ''

ମୂଷା ହସିଦେଇ କହିଲା- ଯାଃ .... ଏବେ ଧରା

ହୋଇଗଲା-ଭଲହେଲା । ଏଣିକି ନିଶ୍ଚିନ୍ତରେ ରହିବା ।

ମନ ଖୁସିରେ ଗୁଣୁଗୁଣୁ ଗୀତ ଗାଇ ନଟଖେଟିଆ ଗୋଟାଏ ସରୁ ଚେନ୍‌ରେ ମୁଷ୍ଟାର ବେକକୁ ବାନ୍ଧି ଲୁହା ପଞ୍ଜୁରୀରେ ଛାଡ଼ିଦେଲା । ଚୁନା ଚୁନା ମାଛ କେଇଟା ପକେଇଦେଇ ଗାଆଁ ଆଡ଼କୁ ଚାଲିଗଲା ବୁଲିବାକୁ । ଜୀଅନ୍ତା ମାଛଗୁଡ଼ାକ ମୁଷ୍ଟା ଆଗରେ ଖାଲି ଖପର ଖପର ହେଇ ଡ଼େଉଁଥା'ନ୍ତି। ଲୁହରେ ଓଦା ହୋଇ ଆସିଲା ମୁଷ୍ଟାର ଆଖି ଦୁଇଟା । ଯେଉଁ ମାଛ ଖାଇବ ବୋଲି ବଡ଼ଭାଇ ସାଙ୍ଗରେ ଗଡ଼ାପଡ଼ା ଲାଗି , ଲହୁଲୁହାଣ ହୋଇ ଧରାପଡ଼ିଲା--ସେଇ ମାଛଗୁଡ଼ାକ ଏତେ ପାଖରେ ପାଇ ମଧ୍ୟ ମୋଟେ ଖାଇବାକୁ ଇଚ୍ଛା ହେଉ ନଥିଲା ତା'ର । ବଡ଼ ଭାଇ ଆଉ ମାଆଙ୍କ କଥା ମନେପଡ଼ି ଛାତି ଭିତରଟା କେମିତି ଗୋଳେଇ ଘାଣ୍ଟି ହୋଇଯାଉଥିଲା ।

ବେଳ ଦି' ପହରକୁ ପଞ୍ଚାଏ ବଗୁଲିଆ ପିଲାଙ୍କୁ ସାଙ୍ଗରେ ଧରି ନଟଖେଟିଆ ଆସି ପହଞ୍ଚିଲା ପଞ୍ଜୁରି ପାଖରେ । ଖୁସିରେ ତା'ର ପାଦ ଦୁଇଟା ଯେମିତି ତଳେ ଲାଗୁନଥାଏ । ନେଉଳ ଛୁଆକୁ ଦେଖୁ ଦେଖୁ ଆଗକୁ ଦୁଇପାଦ ମାଡ଼ିଆସି ନଟଖେଟିଆର ସାଙ୍ଗ ନେଫେଡ଼ା ପାଟିକରି କହିଲା- ''ଆରେ..ଆରେ ନେଉଳ ବେକଟାକୁ ଏମିତି ଚାପିକରି ବାନ୍ଧିଛୁ କାହିଁକି ? ଲୋମଗୁଡ଼ାକ ଉପୁଡ଼ିଯିବ ଯେ ଶେଷକୁ ଘାଆ ହୋଇ ମରିବ । ଆଣ୍ ଆଣ୍ , ମୁଁ ଟିକିଏ ଢ଼ୁଗୁଲା କରିଦିଏ ।''

ପଞ୍ଜୁରିର ଦୁଆର ଖୋଲି ନେଉଳ ବେକର ଚେନ୍‌ଟାକୁ ଢ଼ିଲା କରୁ କରୁ ମୁଷ୍ଟା ତା ଆଙ୍ଗୁଠିକୁ ଏମିତି କାମୁଡ଼ି ଧଇଲା ଯେ ବିକଳରେ ନେଫେଡ଼ାର ହାତ ଦୁଇଟା ଛଟପଟ ହୋଇଗଲା । ଅତରଛାରେ ନେଉଳଟାକୁ ତଳକୁ ଫୋପାଡ଼ି ଦେଲା ସିଏ । ଏଇ ସୁଯୋଗକୁ ମୁଷ୍ଟା ବା ଛାଡ଼ୁଛି କେଉଁଠି ? ବେକରୁ ଚେନ୍ ଖସେଇ

ଏକା ନିଃଶ୍ୱାସରେ ସିଏ ବାଉଁଶ ଭାଡ଼ି ତଳକୁ ଗଳିଗଲା । ସାନଭାଇର ଧରାପଡ଼ିବା କଥା ଭାବି ଭାବି ସେତେବେଳଯାଏ ବି ଚୁଣ୍ଡାର ମନଟା ଖାଲି ଡ଼ହଳବିକଳ ହେଉଥିଲା । ହଠାତ୍ ମୁଣ୍ଡାକୁ ଫେରିଆସିବା ଦେଖି ଝପଟି ଆସିଲା ସିଏ । ଆଦରରେ ତାକୁ କୁଣ୍ଢେଇ ଧରି ଚେ଼ନ୍‌ର ଦାଗ ବସି ବେକରେ ଟାଙ୍କୁରି ଉଠିଥିବା ଲୋମଗୁଡ଼ାକୁ ଚାଟି ଭାରି ଯତନରେ ସଜାଡ଼ି ଦେଲା ।

ସ୍ନେହରେ ଦୁଇଭାଇ ଏମିତି ଧରାଧରି ହୋଇଥିବା ଦେଖି ମାଆ ନେଉଳର ମନ ଭିତରଟା ଖୁସିରେ ପୂରିଉଠିଲା । ନରମ ଗଳାରେ ଦୁଇଭାଇଙ୍କୁ ପାଖକୁ ଡ଼ାକି କହିଲା- ''ନିଜ ନିଜ ଭିତରେ କଳି କରିବାର ଫଳ ଏବେ ଦେଖିଲ ତ ? ତୁମେ କଳିକରି ବାଡ଼ିଆପିଟା ହେଲେ, ଅନ୍ୟମାନେ ମଜା ମାରନ୍ତି, ଖୁସି ହୁଅନ୍ତି । ଆଉ କଳି କରିବାବାଲାର ଯେଉଁ କ୍ଷତି ହୁଏ, ତାହା କ'ଣ ସହଜରେ ପୂରଣ କରିହୁଏ ? ତୁମେ ସବୁ ନିଜେ ତ ଦେଖିଛ-- ସେଦିନ ଗୋଟାଏ ଛୋଟିଆ କଥାରେ ତୁମ ବାପା ଆଉ ମୁଁ କଳିକରି କାମୁଡ଼ାକାମୁଡ଼ି ହେଉ ହେଉ ଭାଲୁଆ କୁକୁରଟା ତୁମ ବାପାକୁ ଟେକି ନେଇଗଲା ଯେ ଗଲା । ଆଉ କ'ଣ ବାପା ଫେରିଲେ ? ସଂସାର ମୋର ଉଜୁଡ଼ିଗଲା । ହେଲେ ସେ ଭୁଲ୍‌ଟା କ'ଣ ଆଉ ସୁଧାରି ହେଲା ? ଏଣୁ କଳି କଲାବେଳେ ଆମେ ଭଲମନ୍ଦ କିଛି ଜାଣି ପାରୁନାହିଁ । କଳି ଭିତରେ ଏତେ ମଜ୍ଜିଥାଉ ଯେ କେଉଁଠି କ'ଣ କ୍ଷତି ହେଉଛି-- ଜମା ବୁଝାପଡ଼େନି । ''

ମାଆ ମୁହଁକୁ ଚାହିଁ ମୁଣ୍ଡା କହିଲା-- ''ଆମେ କ'ଣ ଏକା କଳି କରୁଛୁ ? ସମସ୍ତେ ତ ଏବେ କଳିକଜିଆରେ ମାତିଛନ୍ତି । ''

ମୁଣ୍ଡା ପାଟିରୁ କଥା ଛଡ଼େଇ ତା' ଭାଇ ଚୁଣ୍ଡା କହିଲା-- '' ହଁ ପରା .. ଆମ ପଶୁପକ୍ଷୀଙ୍କ ଅପେକ୍ଷା ମଣିଷଗୁଡ଼ାକ ବେଶି କଳିହା । କଥା କଥାକେ ସେମାନଙ୍କର ଠେଙ୍ଗା, ବାଡ଼ି, ଖଣ୍ଡା ଭୁଜାଲି, ଗୁଳିଗୋଳା ସାଙ୍ଗକୁ କୋର୍ଟକଚେରୀରେ ମାମଲା

ଲାଗେ । ସେତିକିରେ ବି କଥା ଅଟକୁଛି କେଉଁଠି ? ବେଳେବେଳେ ଜାତି ନାଆଁରେ , ଧର୍ମ ନାଆଁରେ ଦେଶଦେଶ ଭିତରେ ବି ହାଣକାଟ ଲାଗିଯାଉଛି । ହେଲେ ଲାଭ କିଛି ମିଳୁନି । ଖାଲି ଲୋକ ଗୁଡ଼ାକ ହଇରାଣ ହେଉଛନ୍ତି । ''

ମୁଣ୍ଡା କହିଲା -- '' ଏସବୁର କ'ଣ ସମାଧାନ କିଛି ହୋଇପାରନ୍ତା ନାହିଁ ? ''



' ମାଆ ନେଉଳଟା ତା ମଳିନ ମୁହଁରେ ହସ ଫୁଟେଇ କହିଲା - ''ହୋଇପାରିବେନି କାହିଁକି ? ଆମେ ନିଜେ ଯଦି ମନରେ ଥିବା ରାଗକୁ ଛାଡ଼ି, ବୁଝିବିଚାରି କାମ କରିବା -- ସବୁ ହେବ । ନହେଲେ ଛୋଟିଆ ଛୋଟିଆ କଥାରେ ଏମିତି ରାଗକରି ଗଣ୍ଡଗୋଳ କଲେ, ଦୁନିଆଯାକ ଅନର୍ଥ, ଘଟିଯିବ । ହେଲେ, ସବୁ କାମକୁ ଟିକିଏ ଭାବିଚିନ୍ତି କର, ଦେଖିବ, ସାରା ସଂସାରଟି ସ୍ନେହ ଆଉ ଭଲପାଇବାରେ ହସିଉଠିବ । ''

ମାଆ କଥା ଶୁଣି ବଡ଼ଭାଇ ଆଡ଼କୁ ଚାହିଁ ମୁରୁକି ହସି ମୁଣ୍ଡା କହିଲା -- '' ହଁ, ଠିକ୍ କଥା । ''



# ନିଜେ ଭଲ ହେଲେ ଦୁନିଆ ଭଲ



ଅତି ପାଖରେ ସାରୁପତ୍ର ଦୁଇଟା ହାତରେ ଧରି ଠିଆ ହୋଇଥିବା ପପୁଲ୍‌କୁ ଦେଖି ଡ଼ରରେ ଚମକି ପଡ଼ିଲା ଚିମିଲି । ବିକଳରେ ନାଲିକଙ୍କି ସାଙ୍ଗରେ ଚମ୍ପା ଗଛର ଅଗଡ଼ାଳକୁ ଉଡ଼ିଗଲା ବୋଲି ବଞ୍ଚିଗଲା । ଚମ୍ପା ଗଛ ତଳକୁ ତଥାପି ପପୁଲ୍‌କୁ ଧାଇଁ ଆସୁଥିବା ଦେଖି ଚିମିଲି ପଚାରିଲା '' ଆଃ...ତମେ ଏମିତି ଆମପଛେ ପଛେ ଧାଉଁଛ କାହିଁକି ? ସକାଳ ପହରୁ କେଉଁଠି ଥୟ କରିବସେଇ ଦେଉନ, ସଜ ଫୁଟା ଫୁଲ ଗୁଡାକରୁ ମହୁ ଶୁଖିଗଲେ, ଆମେ ଖାଇବୁ କ'ଣ ? ମୁଁ ତ ଜମା ବୁଝି ପାରୁନି-ଏଠୁ ସେଠିକି, ସେଠୁ ଏଠିକି ଆମକୁ ଉଡ଼େଇ ଉଡ଼େଇ ତୁମେ ପାଉଛବା କ'ଣ ?

ମୁହଁକୁ ଥମ ଥମ କରି ସାରୁ ପତ୍ର ଦୁଇଟାକୁ ଟିକିଏ ଦୂରକୁ ଫିଙ୍ଗି ଦେଉ ଦେଉ ପପୁଲ୍ କହିଲା-'' ପାଇବି ଆଉ କ'ଣ ? ତୁମର ଛିଟିଛିଟା ରଙ୍ଗ, କୁନି କୁନି ଡେଣା ମତେ ଭାରି ଭଲଲାଗେତ, ସେଇ ସକାଶେ ଧରିବାକୁ ଧାଉଁଛି ।

ପପୁଲ୍‌ର କଥା ନସରୁଣୁ କୁନି ପ୍ରଜାପତି ଚିମିଲି ଥଟ୍ଟାରେ କହିଲା " ଘଡ଼ିଏ ଆଗରୁ ପରା ତୁମେ କାଳି କୁକୁର ଛୁଆଟାର କାନକୁ ଭିଡ଼ି କେଁ କେଁ କରଉଥିଲ-ସେଇଟା ବି କ'ଣ ଭଲ ଲାଗୁଥିଲା ...?"

ଆଉ ଟିକିଏ ଉପରକୁ ଉଡ଼ିଯାଇ ନାଲିକଙ୍କି କହିଲା "ସେତିକି କ'ଣ ? ତା ଆଗରୁ ଘର ଆଗଟାରେ କାଠି କୁଟାରେ ନିଆଁ ଜାଳି ମାଆ ଠାରୁ ମାଡ଼ ଖାଇବାକୁ ବି ଭାରି ମଜା ଲାଗୁଥିଲା ନିଶ୍ଚୟ, ନୁହେଁ....?"

ମୁହଁକୁ ଶୁଖେଇ ପପୁଲ୍ କହିଲା -"ସତରେ, ମୁଁ ଜମା ବୁଝିପାରୁନି-ମୋତେ ଯାହା ସବୁ ଭଲ ଲାଗେ, ସେ ସବୁତ ମୁଁ ଖୁସିହୋଇ କରେ । ହେଲେ ସେଥିରେ ମାଆ, ବାପା, ସାଇପଡ଼ିଶା-ସଭିଏଁ ଚିଡ଼ନ୍ତି କାହିଁକି ...? କିଏ ମାଡ଼ ଦିଏ ତ କିଏ ଗାଳି ଦିଏ, ତଥାପି ମୋର ଜମା ମନେ ରୁହେନି, ଘଣ୍ଟେ କି ଅଧ ଘଣ୍ଟାଏ ପରେ ସବୁ ଭୁଲିଯାଏ । "

ଟିକିଏ ଛେପ ଢ଼ୋକି ପୁଣି ପପୁଲ୍ କହିଲା-ମୁଁ ଏବେ କରିବି କ'ଣ ..? ମୋ ମନ ଭିତରଟା ତ ସବୁ ବେଳେ ଖୁଜ୍ ବୁଜ୍ କରେ । କୁକୁର ଛୁଆ କି ବିରାଡ଼ି ଛୁଆକୁ ନେଇ ଦଉଡ଼ିରେ ବାନ୍ଧି ନଚେଇବା, ପ୍ରଜାପତି, କଙ୍କି ଧରିବା, ଟେକାଫିଙ୍ଗି ଚଢେଇ ମାନଙ୍କ ବସା ଭାଙ୍ଗିବା, ଦି'ପହର ସାରା ନଈ ପୋଖରୀରେ ଢୁଡ଼ିବାକୁ ମୋତେ ଭାରି ଭଲ ଲାଗେ । ସବୁଠୁ ବେଶୀ ମଜା ଲାଗେ କାଠି, କୁଟା, କାଗଜ ଏକାଠି କରି ରୋଷେଇ ଘରୁ ଦିଆସିଲି ଲୁଚେଇ ଆଣି ନିଆଁ ଜଳେଇବାକୁ । ଘର କାନ୍ଥରେ ନାଲି ନେଳି ରଙ୍ଗରେ ଗାରେଇବାକୁ ଆହୁରି ଭଲଲାଗେ । " ଚିମିଲି କହିଲା -" ଏଁ ...ଯେତେ ସବୁ ଖରାପ କାମ...!! କହିଲ ଦେଖି-ଏମିତିକାମରେ କିଏ ନ ଚିଡ଼ିବ ? ବାପା, ମା'ତ ନିଶ୍ଚୟ ଚିଡ଼ିବେ । "

ଆଉ ଦୁଇ ପାଦ ଗଛ ପାଖକୁ ଆଗେଇ ଆସି ପପୁଲ୍ କହିଲା-"କାହିଁ... ମୁଁ ଏଥିରେ ସେମାନଙ୍କର କ'ଣ ଅସୁବିଧା କରୁଛି କି...? ମୋତେ ଯାହା ଭଲ ଲାଗିଲା, ମୁଁ କଲି। ହେଲେ, ମୋ ଉପରେ ତୁଚ୍ଛାରେ ଏମିତି ରାଗୁଛନ୍ତି କାହିଁକି ? ମାଡ଼ ଆଉ ଗାଳିକୁ ତ ମୋର ଜମା ଡ଼ର ନାହିଁ। ହେଲେ, ପଡ଼ିଶା ଘର ମାଉସୀ ଯେତେବେଳେ ନାକଟେକି ଘୃଣାରେ 'ଦୁଷ୍ଟ ପିଲାଟା' ବୋଲି କୁହନ୍ତି-ମୋତେ ଭାରି କାଟେ, ମୁଁ କୁଆଡ଼େ ଖରାପ ପିଲା ବୋଲି ମୋ ସାଙ୍ଗରେ ବି କେହି ସାଙ୍ଗ ହେବାକୁ ମଙ୍ଗନ୍ତିନି"

ପପୁଲ୍‌ର କଥା ସରୁ ସରୁ କୁନି ପ୍ରଜାପତି ଟିମିଲି ଚଟ୍‌କରି କହିପକେଇଲା- "ଏଇ କଥାକୁ ତୁମେ ମନ ଦୁଃଖ କରୁଛ..? ବୁଝିଲ.. ମୁଁ ତୁମକୁ ଗୋଟାଏ ଉପାୟ ବତେଇ ଦେବି। ଦେଖିବ- ସମସ୍ତେ ତୁମକୁ ଆଦର କରିବେ। ଅନ୍ୟ ପିଲାମାନେ ବି ତମ ସାଙ୍ଗରେ ଖେଳିବାକୁ, ସାଙ୍ଗ ହେବାକୁ ଆପେ ଆପେ ଧାଇଁ ଆସିବେ।"

ପ୍ରଜାପତିର କଥାଶୁଣି କାବା ହୋଇ ପପୁଲ୍ ପଚାରିଲା ...ଏଁ! କେମିତି ??"

ଆଉ ଟିକିଏ ତଳ ଡ଼ାଳକୁ ଉଡ଼ିଆସି ଡ଼େଣା ଯୋଡ଼ାକୁ ଦୁଇ ଚାରିଥର ହଲେଇ ଦେଲା ଟିମିଲି, ନାଲି କଙ୍କି ଆଡ଼େ ଥରେ ଚାହିଁ ହସିଦେଇ କହିଲା -"ବୁଝିଲ ପପୁଲ୍ ବାବୁ! ଏଇ ଯେମିତି- ମୋର କୁନି କୁନି ଡ଼େଣା, ଛିଟା ଛିଟା ରଙ୍ଗ ଦେଖି ମୋ ସାଂଗରେ ତମେ ସାଂଗ ହେବାକୁ ଆଜି ଗୋଡ଼େଇଛ, ହେଲେ ମନେ ପକେଇଲ...କେଇଦିନ ତଳେ ତୁମେ ମୋତେ ଦୂର୍ ଦୂର୍ ମାର ମାର କରୁଥିଲ। ତୁମ ଝରକା କବାଟରେ ଦିନେ ଯାଇ ବସିଥିଲି ବୋଲି, କେତେ ହିନସ୍ତା ତମେ ମତେ କରିଛ ...ଶେଷକୁ ଦୁଇଟା କାଠିରେ ଚାପିଧରି ମତେ ନେଇ ଫିଙ୍ଗିଦେଲ ଖତଗଦା ଭିତରକୁ।"

ଚିମିଲି କଥା ଶୁଣି କାବା ଲାଗୁଥିଲା ପପୁଲ୍‌କୁ । ଯେତେ ମନେ ପକେଇଲେ ବି କାହିଁ...କିଛି ତ ତା'ର ମନେ ପଡୁନି...!

ଶୁଣ୍ଢ ଦୁଇଟାକୁ ଉପରକୁ ଟେକି ଚିମିଲି କହିଲା–କ'ଣ ମନେ ପଡୁନିତ ? କେମିତି ମନେ ପଡ଼ିବ..ସେତେବେଳେ କ'ଣ ମୋର ଏ' ରୂପ ଥିଲା.. ସେତେବେଳେ ତ ମୋ ଦେହସାରା ଖାଲି ଟାଆଁସା ଟାଆଁସା କଳା କଳା ଲୋମ,ଯୋଡା ଯୋଡା ହୋଇ କେତେ ଗୁଡ଼ାଏ ଅସନା ଅସନା ଗୋଡ଼ । ଲୋମ ଗୁଡ଼ାକ ବି ଦେହରେ ଯେଉଁଠି ଲାଗିବ କୁଣ୍ଡେଇ କୁଣ୍ଡେଇ ଫୁଲିଯିବ, ନାଲି ପଡ଼ି କେତେ ହିନସ୍ତା କରିବ । ''



ଘୃଣାରେ ନାକଟେକି ପପୁଲ୍ କହିଲା –''ଓହୋ.. ତୁମେ ସେଇ ଅସନା ସାଁବାଳୁଆ କଥା କହୁଛ ନା ?

ଚିମିଲି କହିଲା –''ହଁ ..ହଁ ଠିକ୍ ମନେ ରଖିଛ । ସେଦିନ ଅସନା ସାଁବାଳୁଆ ବୋଲି କହି ମୋ ଉପରକୁ ଛେପ ପକେଇ ତୁମେଇ ତ ମୋତେ ଦୂରକୁ ଫିଙ୍ଗି ଦେଇଥିଲ, ହେଲେ ଆଜି ମୋ ସୁନ୍ଦର ରୂପ ଦେଖି କେତେ ଆଦରରେ ମୋ ପଛରେ ଗୋଡ଼େଇଛ ...''।

ଚିମିଲିର କଥାକୁ ଜମା ବିଶ୍ୱାସ ଲାଗୁନଥିଲା ପପୁଲ୍‌ର । କାହିଁ ଏ ଛିଟି ଛିଟିକା ରଙ୍ଗିଲା ପ୍ରଜାପତି ଆଉ କାହିଁ ସେ ଟାଆଁସା ଲୋମ ବାଲା ଅସନା ସାଁବାଳୁଆ... ।

ପପୁଲ୍‌କୁ ଆବାକାବା ହୋଇ ଚାହିଁଥିବା ଦେଖି ଚିମିଲି କହିଲା-'' କ'ଣ ବିଶ୍ୱାସ ଲାଗୁନି...? ସାଁ'ବାଳୁଆ ଥିଲା ବେଳେ ମୋର ଟାଆଁସିଆ ଲୋମ ଆଉ ଅସନା ରୂପକୁ ଦେଖି ଖାଲି ତୁମେ କାହିଁକି...ସମସ୍ତେ ବି ଘୃଣା କରନ୍ତି, ହେଲେ ସେଇ ସାଁ'ବାଳୁଆ ବେଳର ଘୃଣା ଆଉ ଅପମାନକୁ ସହି ସହି ଶେଷକୁ ମୁ ନିଜେ ବଦଳିଗଲି । ସେଥିପାଇଁ କ'ଣ କମ୍ କଷ୍ଟ ମତେ ସହିବାକୁ ହୋଇଛି .. ନିଜ ଚାରିପଟେ ଗୋଟାଏ କୋଷା କରି ଦିନ ଦିନ ଧରି କେତେ ଦିନ ମୁଁ ରହିଛି ତା ଭିତରେ । ଶେଷକୁ ଯେତେବେଳେ ମୁଁ କୋଷା ଭିତରୁ ବାହାରିଲି ସେତେବେଳକୁ ମୋ ରୂପଟା ପୂରା ବଦଳି ଯାଇଛି । ମୋର କଳା ଟାଆଁସା ଲୋମ ଦେଖି ଯେଉଁ ଫୁଲ ଗୁଡ଼ାକ ମୋତେ ଘୃଣା କରୁଥିଲେ, ସେଇମାନେ କେତେ ଆଦରରେ ଆଜି ପାଖକୁ ଡାକି ମହୁ ଖାଇବାକୁ ଦେଉଛନ୍ତି, ତୁମ ପରି ଯେଉଁମାନେ ମତେ ଦେଖି ନାକ ଟେକୁଥିଲେ, ସେଇମାନେ ବି ମୋର ଛିଟା ଛିଟା ରଙ୍ଗିନ୍ ଡ଼େଣାକୁ ଦେଖି କେତେ ଖୁସି ହେଉଛନ୍ତି । ''

ଆଁ' ଟା କରି କଥା ସବୁକୁ ଶୁଣି ଯାଉଥିବା ପପୁଲ୍‌କୁ ଚାହିଁ ନାଲି କଙ୍କି କହିଲା-''କ'ଣ ପପୁଲ୍‌ବାବୁ !! ସାଁବାଳୁଆ ପ୍ରଜାପତି ହେଲା ପରି ତୁମେ ବି କ'ଣ ଦୁଷ୍ଟ ପିଲାରୁ ସୁନାପିଲା ହୋଇ ପାରିବ ନି... ? ''

କୁନି ପ୍ରଜାପତି ଚିମିଲି କହିଲା -''ହୋଇପାରିବନି କାହିଁକି? ନିଜକୁ ସୁଖ ବା ମଜା ଲାଗୁଛି ବୋଲି ଅନ୍ୟକୁ ଯେ କଷ୍ଟ ଦେଇ ଖୁସି ହେବ, ଘରେ ବାହାରେ, ସ୍କୁଲରେ କିଛି ଶୃଙ୍ଖଳା ମାନିବନି ଏଇଟା କ'ଣ ଭଲ କଥା ? ତୁମେ ନିଜେ ଚାହିଁଲେ ସବୁ ହେବ ।

ଚେଷ୍ଟା କଲେ ଆପେ ଆପେ ତୁମ ପ୍ରକୃତି ବଦଳି ଯିବ । କୋଷା ଭିତରେ ଥାଇ ଆଗ ଆଗ ମୋତେ କଷ୍ଟ ଲାଗିଲା ପରି ପ୍ରଥମ କେତେ ଦିନ ତୁମକୁ ନିଶ୍ଚୟ ଅଡୁଆ ଲାଗିବ, ହେଲେ ଦେଖିବ-ମୁଁ କୋଷା ଭିତରୁ ବାହାରିଲା ପରି ଯେଉଁ ଦିନ ସମସ୍ତେ ଜାଣିବେ ତୁମେ ସତକୁ ସତ ସୁନା ପିଲା ହୋଇ ଯାଇଛ, କେତେ ଆଦର କରିବେ ତୁମକୁ । ଯେଉଁ ପିଲାମାନେ ତୁମକୁ ଦୁଷ୍ଟ ବୋଲି ଘୃଣା କରୁଛନ୍ତି ସେଇମାନେ ବି ତୁମ ସାଙ୍ଗରେ ଖେଳିବାକୁ ଆଉ ସାଙ୍ଗ ହେବାକୁ ନିଜେ ନିଜେ ପାଖରେ ପହଞ୍ଚିବେ, ଆଜି ସିନା ଦୁଷ୍ଟ ପିଲା ଭାବୁଛନ୍ତି, କିନ୍ତୁ ସେ ଦିନ ବାପା, ମାଆ, ସାଇ ପଡ଼ିଶା ନିଶ୍ଚୟ ତୁମକୁ ସୁନା ପିଲା ବୋଲି କହିବେ । ”



ସବୁ କଥାକୁ ମନଦେଇ ଶୁଣୁଥିବା ନାଲି କଙ୍କିଟା ଚମ୍ପା ପତ୍ର କନ୍ଦିରୁ ତଳ ଡ଼ାଳକୁ ଉଡ଼ିଆସି କହିଲା “କ’ଣ ପପୁଲ୍ ବାବୁ! ପାରିବ ତ ନିଜେ ନିଜକୁ ବଦଳେଇ ? ଅନ୍ୟମାନେ ଦୁଷ୍ଟ ପିଲା କହୁଛନ୍ତି ବୋଲି ଆଉ ମନଦୁଃଖ କରୁଛ କାହିଁକି ? ବୁଝିଲ -ତୁମେ ନିଜେ ଭଲ ହେଲେ ସାରା ଦୁନିଆ ପରା ତୁମକୁ ଭଲ କହିବ । ”

ଚୁପ୍ ଚାପ୍ ମୁଣ୍ଡ ଟାକୁ ଟୁଙ୍ଗାରି ଦେଇ ପପୁଲ୍ ମନେ ମନେ ଭାବିଲା

- “ହଁ...ହଁ -ସତକଥା । ”



# ସ୍ନେହଟି କିଏ ଲୋଡ଼ା



ପଶ୍ଚିମ ଆକାଶରେ ଟହ ଟହ ହସୁ ହସୁ ନାଲି ସୂରୁଜ ଶୀତୁଆ ପବନକୁ କ'ଣ କହିଦେଲା କେଜାଣି- ଗଛପତ୍ରକୁ ହଲେଇ ପବନଟା ଉଛନ୍ନ କରିଦେଲା ସମସ୍ତଙ୍କୁ। ମହ ମହ ବାସୁଥିବା ପାଚିଲା ଧାନ କ୍ଷେତରୁ କିଚିରି ମିଚିରି ଶବ୍ଦ କରି ପଞ୍ଝାଏ ଘରଚଟିଆ ଉଡ଼ିଗଲେ ପାଖରେ ଥିବା ବରକୋଳି ଗଛକୁ। ତରବର ହୋଇ ଥଣ୍ଟରେ ଅଣ୍ଟେ ଆହାର ଧରି ମାଆ କାଉଟା କୁଆଡ଼ୁ କେଜାଣି ଉଡ଼ିଆସିଲା-ତା ଛୁଆପାଖକୁ। ହେଁ..! ଏ କ'ଣ..!! ଛୁଆ କାହିଁ ?? ବସାଟା ତ ଖାଲି ପଡ଼ିଛି.. ରାଉ ରାଉ କରି ବିକଳରେ ଡ଼ାକ ଛାଡିଲା ସେ । କ'ଣ ବୁଝିଲେ କେଜାଣି, ଆଖି ପିଛୁଳାକେ କାହିଁ କୁଆଡ଼ର ଶହ ଶହ କାଉ ଏକାଠି ହୋଇଗଲେ। ଡ଼ାମରାକାଉ, ପାତିକାଉ- ସମସ୍ତଙ୍କ ରଡ଼ିରେ କାନଟା ଫାଟି ପଡୁଥାଏ। ଏମିତି କିଛି ସମୟ କୋଳାହଳରେ କଟିବା ପରେ ସମସ୍ତେ ମିଶି ଛୁଆକୁ ହରେଇଥିବା ମା'କାଉ ଓ ବାପା କାଉକୁ ବୁଝେଇ ଚାଲିଲେ । ଛୁଆକୁ କିଏ ନେଲା ବା ଖାଇଲା, ସେ କଥା ପରଦିନ ସକାଳୁ ବୁଝିବେ ବୋଲି ଠିକ୍‌କରି ସମସ୍ତେ ମନ ଦୁଃଖରେ ଚୁପ୍ ହୋଇ ଯିଏ ଯାହା ଗଛକୁ ଉଡ଼ିଗଲେ ।

ନିଜ ଘରକୁ ଫେରି ଯାଉ ଯାଉ ପାତିକାଉ ଟିମ୍ପା ପଡ଼ିଆ ମଝିରେ ବୁଢ଼ୀ କୁତୀ ମୋତି ଆଉ ତା ପୁଅ ରାଜାକୁ ଦେଖିଲା । ମାଆ ପୁଅ ଦୁହେଁ ସାହୁ ଘର ଦୋକାନ ଆଗରୁ ଝାମ୍ପି ଆଣିଥିବା ଶୁଖିଲା ପୁରି ଖଣ୍ଡିକ ପାଇଁ ଭିଡ଼ା ଓଟରା ଲଗେଇଛନ୍ତି । ମାଆଠାରୁ, ରାଜାର ବଳ ବେଶୀ । ବୁଢ଼ୀ ମାଆଟାକୁ ଗଡ଼େଇ ପଡ଼େଇ କାମୁଡ଼ି ଚାଲିଛି ସେ । ମୋତି ବିଚରା ବଳରେ ନପାରିଲେ ବି ଖେଁ ଖେଁ କରି ଖିଙ୍କାରି ଉଠୁଛି ଆଉ ମଝିରେ ମଝିରେ ପୁଳାଏ ଲେଖାଁ ଭିଣି ଦେଉଛି ପୁଅକୁ ।ଯୋଉ ପୁରି ପାଇଁ ଦୁହିଁଙ୍କ ଭିତରେ କଳି, ସେ ଖଣ୍ଡିକ ପଡ଼ିଛି ଟିକିଏ ଦୂରରେ । ସେ ଆଡ଼କୁ କିନ୍ତୁ ଦୁହିଁଙ୍କର ନଜର ନାହିଁ । କାମୁଡ଼ା କାମୁଡ଼ିରେ ଏକବାର ମସ୍ତ । ଏ କଥା ଦେଖି ପାତି କାଉ ଟିମ୍ପାକୁ ଯେତିକି ମଜା ଲାଗିଲା, କୁକୁର ଦୁଇଟାଙ୍କ ଦେହକୁ ଦେଖି ସେତିକି ଦୁଃଖ ବି ଲାଗିଲା ।

ଖୁବ୍ ବଡ଼ ପାଟିକରି ଟିମ୍ପା–ମୋତି ଆଉ ରାଜାଙ୍କୁ କଜିଆ ବନ୍ଦ୍ କରିବାକୁ କହିଲା । ହେଲେ ତା କଥା ଶୁଣୁଚି କିଏ... ମୋତି ତ ଖାଲି ଧକେଇ ହେଉଥାଏ । କଷ୍ଟେମଷ୍ଟେ ଯା' ହେଉ ପୁଅ ପାଖରୁ ଖସି ଆସିଲା ସେ । ରାଜା ବି ଜିଣି ଯାଇଥିବାର ଗର୍ବରେ ଦେହକୁ ଦୁଇଥର ଝାଡ଼ି ଦେଇ ଶୁଖିଲା ପୁରି ଖଣ୍ଡକ ଗେକେଟି ରେକେଟି ଆଖି ତାରଟି ଚାହିଁଲା ପାତି କାଉ ଆଡ଼କୁ ।

ଟିମ୍ପା ତାର କଣ୍ଠକୁ ଟିକେ ନରମ କରି କହିଲା– ''ହଇରେ ରାଜା ! ତୋର କ'ଣ ବୁଦ୍ଧିବିଚାର ଟିକିଏ ନାହିଁ ? ବୁଢ଼ୀ ମାଆଟାକୁ ଖଣ୍ଡିଆ ଖାବରା କରି କ'ଣ ପାଇଲୁ ?''

ରାଗରେ ଦାନ୍ତ କଡ଼ମଡ଼ କରି ରାଜା ତା' ମାଆ ମୋତିକୁ ଥରେ ଚାହିଁଲା ଆଉ କହିଲା –''ଥାଉ ଥାଉ ଟିମ୍ପା ! ଏତେ ଆଉ ମାଆ ଆଡ଼କୁ ହେଇ କହନା । ମୁଁ ତ ପୁରି ଖଣ୍ଡକ ଆଣିଲି । ସିଏ କିଛି ନ କରି ଖାଇବ ବୋଲି ମୋ ଉପରକୁ ଝାମ୍ପି ପଡୁଛି କାହିଁକି ?'' ଧକେଇ ଧକେଇ ମୋତି ତା'ର କାନ୍ଦୁରା ସ୍ୱରରେ କହିଲା– ''ଖାଇବାକୁ ମାଗିଲି ତ, କ'ଣ ହେଲା ? ଛୋଟ ଥିଲାବେଳେ ଏଇ

ଛୁଆଙ୍କ ପାଇଁ ମୁଁ କେତେ କଷ୍ଟ  ନ କରିଛି ? କେତେ କୋଉଠି ମାଡ଼ ପିଟା ଖାଇ ଏଇମାନଙ୍କ ମୁହଁରେ ଆହାର ଦେଲି । ହେଲେ, ମୋ ବୁଢ଼ୀ ହେବା ବେଳକୁ- ଏ' ମୋତେ ଖାଇବାକୁ ଦେବ କ'ଣ...ଓଲଟା କାମୁଡ଼ି କାମୁଡ଼ି ଦରମରା କରିଦେଉଛି । ''

ସବୁ ଶୁଣିସାରି ପାତିକାଉ ଟିମ୍ପା କହିଲା- ''ମୋତେ କାବା ଲାଗୁଛି ତୁମ ମାନଙ୍କ କଥା ଶୁଣି, ତମ ଜାତିରେ ତମେ ଗୁଡ଼ା ଏମିତି କାହିଁକି ହୁଅ..? ଛୁଆ ଗୁଡ଼ାକ ଟିକିଏ ବଡ଼ ହୋଇଗଲେ- ମା' ତାଙ୍କୁ ଦୂର ଦୂର୍  କରି କାମୁଡ଼ି ଗୋଡ଼େଇବ  । ବଡ଼ ହୋଇ ଛୁଆଗୁଡ଼ାକ ଅକାଳେ ସକାଳେ କେଉଁଠି ଦେଖାହେଲେ ମାଆ ବାପାଙ୍କୁ ଖେଙ୍କି ଗୋଡ଼େଇବେ । ଅଚିହ୍ନା ଭଳି ବ୍ୟବହାର କରି ଉଠିବେ । ସେଦିନତ ସେଇ ତଳ ସାହିର ଟମି-ଉପର ସାହିରେ ରହୁଥିବା ତା ଝିଅ ନାଲିଟାକୁ କାମୁଡ଼ି  କାମୁଡ଼ି ଦରମରା କରିଦେଲା । ଏମିତି ଖଣ୍ଡିଆ ହେଲା ଯେ ସେ ଘାଆ ଆଉ ଶୁଖିଲା ନାହିଁ। ଘାଇଲା ହେଲା । ସେଇଥିରେ ଘାଣ୍ଟି ହୋଇ ହୋଇ ଶେଷରେ ନାଲି ମଲା । ଅଚିହ୍ନା ହେଉ କି ଚିହ୍ନା ହେଉ- ତୁମରି କୁକୁର ଜାତିତ... ହେଲେ ତମେ ଭାଇ ଭଉଣୀ, ସାଇ ପଡ଼ିଶା-କାହାରି ଭଲମନ୍ଦ ଦେଖ ନାହିଁ । କାହାରିକି ସହି ପାର ନାହିଁ । ଛୋଟିଆ କଥାରେ କଳି କଜିଆ, ଭିଡ଼ା ଓଟରା ଆଉ ଶେଷକୁ ଲହୁ ଲୁହାଣ । ଦେଖିଲ ତ....? ଛା'ର ପୁରି ଖଣ୍ଡିକ ପାଇଁ ମାଆ  ପୁଅ ଦି'ଟା କି ଅବସ୍ଥା ହେଇଛ ? କ'ଣ ଆଉ କହିବି-ତମର ଏଇ କୁକୁରିଆ ପ୍ରକୃତିଟା ଏବେ ମଣିଷମାନଙ୍କୁ ମାଡ଼ିବସିଲାଣି । ସେମାନଙ୍କ ଭିତରେ ବି ଏଇ ଏକା କଥା । ଗୋଟିଏ ଜିନିଷ ପାଇଁ ପଞ୍ଚାଏ ଲୋକଙ୍କ ଭିତରେ କଳି କଜିଆ ଆଉ ଭିଡ଼ା ଓଟରା । ଖାଲି କଳି କଜିଆରେ ବି ସରୁଛି କେଉଁଠି ..? କଥା କଥାକେ ଛୁରି, ବନ୍ଧୁକ, ବୋମା ଫୁଟା ଫୁଟି । ସବୁଆଡ଼େ ହାଉ ହାଉ । ମଣିଷ ସ୍ୱାର୍ଥପର ହେଲେ ତାଙ୍କ ଭିତରେ ଭଲ ସଂପର୍କ ରହିବ କୁଆଡୁ...?

ପଛପଟ ଗଡ଼ିଆ ଆଡ଼କୁ ମୁହଁ ବୁଲେଇ ଟିମ୍ପା ପୁଣି କହିଲା‘‘ହେଇ ଦେଖୁନ, ଦେଖ- ତଳ ସାହିର ମାଗୁଣିଅଜା ଦଳ ଗଡ଼ିଆରେ ଗୋଡ଼ ଧୋଇ ଉଠୁ ଉଠୁ କେମିତି ପଡ଼ିଯାଇ କଷ୍ଟେ ମଷ୍ଟେ ଉଠୁଛନ୍ତି । ବିଚରା ... ଦୁଇ ଦୁଇଟା ପୁଅ । ହେଲେ ଛୁଆ ପିଲାଙ୍କୁ ଧରି ସେମାନେ ସହରରେ । ବୁଢ଼ା ବୁଢ଼ୀ ଦୁଇଟା ବଡ଼ ଦହଗଞ୍ଜ । ନିଇତି ସକାଳୁ ଯାଇ ଅଗଣାରେ ମୁଁ ଡ଼ାକେ । ଡ଼ାକି ଡ଼ାକି ମୋ ତଣ୍ଟି ବସିଗଲେ ବି ସେମାନେ ଉଠନ୍ତିନି । ଶେଯରୁ ତାଙ୍କର ଓଃ...ଆଃ ...ପାଟି ଯାହା ମୋତେ ଶୁଭେ । ’’

ଏତେ ବେଳ ଯାଏ ଚୁପ୍ ଚାପ୍ ଟିମ୍ପାର କଥାକୁ ଶୁଣୁଥିବା ରାଜା ମୁହଁ ଛିଞ୍ଚାଡ଼ି କହିଲା-‘‘ ତୁମେ ଗୁଡ଼ା ଗୋଟାଏ ଜାଗାରେ ବସି ବେଳେ ବେଳେ କେମିତି ହାଉ ହାଉ ହେଉଥାଅ ? କ’ଣ କଳି କରୁନଥାଅ ? ଖୁସିରେ ତ କେହି ଏମିତି କାନ ଉଚ୍ଛୁଳା ରଡି କରନ୍ତି ନାହିଁ...?

ସବୁକଥା ଶୁଣିସାରି ଟିମ୍ପା କହିଲା -‘‘ନା, ନା, ଆମେ ଯେତେବେଳେ ଏକାଠି ହାଉ ହାଉ ହେଉଥାଉ, ସେତେବେଳେ କଳି କରୁ ନଥାଉ । ଏଇ ଘଡ଼ିକ ଆଗର କଥାକୁ ଦେଖୁନୁ -ସୁନ୍ଦରୀ ଆମ୍ବ ଗଛରେ ଆମେ ରାଉ ରାଉ କରି କ’ଣ କଳି କରୁଥିଲୁ ? ସେଠିଥିବା କାଉର କୁନି ଛୁଆଟାକୁ କିଏ ନେଇଯାଇଛି କି କ’ଣ । ସେଥିପାଇଁ-ତା ମା’ ବାପାଙ୍କ ଦୁଃଖରେ ଆମେ ବି ଏକାଠି ହୋଇ ଦୁଃଖ ଜଣାଉଥିଲୁ । ଆମ ଭିତରୁ ଯଦି କେହି ବିଜୁଳି ତାରରେ ଲାଗିଯାଏ, କି ଅନ୍ୟ କିଛି ବିପଦରେ ପଡ଼େ, ତେବେ ଆମେ ରାଉ ରାଉ ହୋଇ ଦୁଃଖ ପ୍ରକାଶ କରୁ । ଆଉ ଯଦି କେବେ ବୁଢ଼ା ମାଙ୍କଡ଼ ଆମ ବସାଭାଙ୍ଗେ ବା କାହା ଛୁଆକୁ ଫୋପାଡ଼ି ମାରେ, ତେବେ ତା କଥା ସରିଲା । ଆମେ ସମସ୍ତେ ମିଶି ଖୁମ୍ପି ଖୁମ୍ପି ତାକୁ ନୟାନ୍ତ କରିଦେଉ । ମଣିଷ ମାନଙ୍କୁ ବି ଛାଡୁନା । ଯଦି କେହି ଆମ ଭିତରୁ କାହାକୁ ଫାଶ ବସେଇ ଧରେ-ଆମେ ତାକୁ ବି ଦଳ ହୋଇ

ଆକ୍ରମଣ କରୁ । ଖାଲି କ'ଣ ଏତିକି...? ବେଳେ ବେଳେ ଶୀତ ଦିନିଆ ଉପର ବେଳା ଆମେ ଏକାଠି ମନ ଖୁସିରେ ଗାଧୋଉ ବହୁତ ମଜା କରୁ । ''



ଲୁହ ଡବ ଡବ ଆଖିରେ ଟିମାକୁ ଚାହିଁ ମୋତି କୁଉଁ କୁଉଁ ହୋଇ କହିଲା- '' ଆହା ... ମଣିଷ ମଣିଷ ଭିତରେ ଆଉ ଆମ କୁକୁର ମାନଙ୍କ ଭିତରେ ଭଲା ଏମିତି ସଂପର୍କ ଥାଆନ୍ତା । ବୁଢ଼ା ବୟସରେ ଛୁଆ ପିଲା ଗୁଡ଼କା କ'ଣ ଏତେ କଷ୍ଟ ଦିଅନ୍ତେ ନା, ଆମେ ଏଡ଼େ ହିନସ୍ତା ହୁଅନ୍ତୁ ...? ବଳ -ବୟସ ଗଲାବେଳକୁ ଆମେ ଆଉ ଅଧିକତ କିଛି ମାଗୁନୁ .. ଖାଲି ସ୍ନେହ ଆଉ ଆଦର ଟିକିଏ ଲୋଡ଼ା, ହେଲେ ମିଳୁଛି କେଉଁଠି ...?



# ଛୋଟ ହେଲେ ବି ବୁଦ୍ଧିରେ ବଡ଼



ହେମାଳ ପବନଟା ଗଛ ପତ୍ର ଉପରେ ଘୁରିବୁଲୁବୁଲୁ ହଠାତ୍ ଆସି ଥମକି ଗଲା ଗାଆଁ ପୋଖରୀ ହୁଡ଼ା ଉପରେ । ଏଁ ...ଇଏ କଣ...!! ଏମିତି ଗୋଟାଏ ମଉଜିଆ ପାଗରେ ସକେଇ ସକେଇ କାନ୍ଦୁଛି ପୁଣି କିଏ ...? ମୁହୂର୍ତ୍ତକ ଭିତରେ ସେ ଖେଦିଗଲା ପୋଖରୀ ସାରା । ପୋଖରୀ ହୁଡ଼ାର ଶିଉଳି ଲଗା ସାରୁ ବୁଦା ମୂଳେ ବେଙ୍ଗ, ବେଙ୍ଗୁଲୀ ଙ୍କ ସୁଉଁ ସୁଉଁ କାନ୍ଦ ଶୁଣି ସେ ଆବାକାବା ହୋଇ ପଚାରିଲା- '' ଆରେ ଆରେ, ତମେ ସବୁ କାନ୍ଦୁଛ କାହିଁକି ? ପାଗଟାତ ଯାହା ହେଇଛି କେଁ କଟର ଗୀତ ଗାଇ ପୋଖରୀ ସାରା କମ୍ପାଇବା କଥା । କ'ଣ ଏମିତି ଦୁଃଖ ପଡିଲା ଯେ- କାନ୍ଦି କାଟି ନୟାନ୍ତ ହେଉଛ ...?

ବଡ କଷ୍ଟରେ କୋହ ସମ୍ଭାଳି ବେଙ୍ଗ କହିଲା-'' କ'ଣ କହିବି...? ମୋ ସଂସାରଟା ଏବେ ଉଚ୍ଛନ୍ନ ହେବାକୁ ବସିଛି । ''

ଏତିକି କହୁ କହୁ କଣ୍ଠଟା ତାର ରୁଦ୍ଧି ହୋଇଗଲା ଯେ କିଛି ଆଉ ସେ କହିପାରିଲା ନାହିଁ । ସେତିକିବେଳେ କାନ୍ଦ ବୋବାଳି ଶୁଣି ସେଇ ଆଡ଼କୁ ଉଡ଼ି ଆସୁ ଆସୁ ଜୁଳୁଜୁଳିଆ ଛୁଆ ଚିମ୍ପା, କହିଲା -'' ଆରେ, ଝିଅ ଜନମତ ପର ଘରକୁ । ଝିଅ ବାହାଘର କରିବ ବୋଲି କ'ଣ ଦିନରାତିସବୁବେଳେ ରଡୁଥିବ ? ବାହାଘରର ଦୁନିଆ କାମ, ଯୋଗାଡ଼ରେ ଲାଗିବ...ନା, ସଭିଏଁ ଏକଜୁଟ ହୋଇ ସକେଇ ହେବ ... ''

ଜୁଳୁଜୁଳିଆର କଥା ଶୁଣି ବେଙ୍ଗୁଲୀର ଧୈର୍ଯ୍ୟର ବନ୍ଧଟା ସତେ ଯେପରି ଭାଙ୍ଗି ଗଲା । ଡ଼ିମା ଡ଼ିମା ଆଖି ଦୁଇଟାକୁ ଆହୁରି-ବଡ଼ କରି ଧକେଇ ଧକେଇ ସେ କହିଲା -''କି ବାହାଘର ଆଉ ହେବରେ ଚିମ୍ପା ...? ବର ପରା ଅଡ଼ି ବସିଛି । କହୁଛି-ସବୁ ବାହାଘରରେ ତ ବାଣ, ରୋଷଣି, ବାଜା ବାଜେ । ମୋ ବାହାଘରରେ ଘଡ଼ ଘଡ଼ିଆ ବାଜା, ଝକ୍‌ମକ ଆଲୁଅର ରୋଷଣି ନହେଲେ, ସେ କି ବାହାଘର...? କି ମଜା ..? ମୁଁ ଦରବେଶ ହେବିନି କି ବାହା ହେବିନି । ''

ବେଙ୍ଗୁଲୀ କଥା ସରୁ ନସରୁଣୁ ଜୁଳୁଜୁଳିଆ ଛୁଆ ଚିମ୍ପା କହିଲା- ''କାଇଁ..ବିଜୁଳି, ଘଡ଼ଘଡ଼ି କ'ଣ ମାରିବ ନାହିଁକି ...?''

ଟିକିଏ ଦୂରକୁ ବସିଥିବା ଭେଠାକାର ମୁରବି ବ୍ରାହ୍ମଣୀ ବେଙ୍ଗଟା ଆଗକୁ ଖପ୍ ଖପ୍ ଧାଇଁ ଆସି ଲୁହଡ଼ବଡ଼ବ ଆଖିରେ ମୁହଁ ଭାରି କରିକହିଲା - ''କଥା ତ ଯାଇ ସେଇଠି, ଆକାଶକୁ ଚାହାଁ-ଆକାଶଟା ସାରା କଳା ମେଘ ଘୋଟି ରହିଛି,ହେଲେ.. ସେଥିରେ ଘଡ଼ ଘଡ଼ିଆ ବାଜା ନାହିଁ କି ଝକ୍‌ମକ ବିଜୁଳି ବି ନାହିଁ । କଳା ମେଘର ରାଗ ଥମ ଥମ ମୁହଁକୁ ଦେଖି ଆମେ ସଭିଏଁ ମୁଣ୍ଡରେ ହାତ ଦେଇ ବସିଛୁ। ତାର ଯୋଉ ରାଗ, ତାକୁ ଭାଙ୍ଗିବ କିଏ ...?

ଏତେବେଳେ ଯାଏ ଚୁପ୍ ଚାପ୍ ସବୁ କଥା ଶୁଣୁଥିବା ହେମାଳ ପବନ କହିଲା, ‘‘କାଇଁ...କ’ଣ ପାଇଁ କଳା ମେଘର ଏ ରାଗ..? ବେଙ୍ଗ କହିଲା, ‘‘ତୁମେ ତ ଜାଣିଛ । ଝିଅ ବାହା ଘରଟାରେ କେତେ ଝିନ୍‌ଝଟ । ଆମେ ବେଙ୍ଗମାନେ ସମସ୍ତେ ସେଇ ଯୋଗାଡ଼ରେ ଲାଗିଥିଲୁ । ଦୂର ବଣରୁ ମୟୂର ଡ଼ାକ ସାଙ୍ଗକୁ ବରକୋଳିଆ ବରଷା ଟୋପା ଦେଖି ଆମେ ଭାରି ଖୁସି ହୋଇଗଲୁ । ହେଲେ ସଙ୍ଗେ ସଙ୍ଗେ ହୁଳହୁଳି ଦେଇ ନାଚି ନାଚି ମେଘକୁ ପାଛୋଟି ଆଣିବାକୁ ଆମର କାହାରି ମନେ ନାହିଁ । ଏଇ ବାହାଘରର ଜଞ୍ଜାଳ ଭିତରେ ସବୁ କେମିତି ଭୁଲି ହୋଇଗଲା । ଏବେ ସେଇ ଗୋଟାକ ହେଲା ଆମପାଇଁ ବିପଦ । ରାଗ ଗରଗର ହେଇ କଳାମେଘ ବରଷା ଟୋପା ଆଉ ଘଡ଼ଘଡ଼ି, ବିଜୁଳି ସବୁ ବନ୍ଦ କରିଦେଲା । ’’

ବେଙ୍ଗ କଥା ସରିଚି କି ନାହିଁ, ମୁରବି ବେଙ୍ଗ କହିଲା ‘‘ହେଲା ଏବେ ଭୁଲ୍‌ଟାଏ ଯଦି ହୋଇଗଲା, ପରେତ ପୁଣି ଆମେ ସମସ୍ତେ କେତେ ନେହୁରା ହୋଇ କାକୁତି ମିନତି କଲୁ । ଆଉ ଥରେ ହୁଳହୁଳି ଦେଇ ଗୀତ ଗାଇ ନାଚି ନାଚି ତାକୁ ପାଛୋଟି ଆଣିବାକୁ ଗଲୁ । ହେଲେ, ସେ କ’ଣ ଶୁଣିଲା ନା, ତା ମନ କୋଉ ତରଳିଲା... ସତରେ ଭାରି ଗର୍ବ ତା’ର । ’’

କୋହ ସମ୍ଭାଳି ବେଙ୍ଗୁଲୀ କହିଲା, ‘‘କଳା ମେଘ ଏଡ଼େ ଦୟାଳୁ , ଏଡ଼େ ମହତ ବୋଲିତ ଚହଳ ପଡ଼ିଛି । ତା’ରି ପାଇଁ ଫୁଲ, ଫଳ ଆଉ ଫସଲରେ ସାରା ଦୁନିଆଟା ହସୁଛି । ହେଲେ, ଏଇ କ’ଣ ତା’ର ମହତ ପଣିଆ ....!’’

ଡ଼େଣା ଝାଡୁ ଝାଡୁ ଜୁଳୁଜୁଳିଆ ଛୁଆ କହିଲା–‘‘ମୁଁ ମାନୁଛି– କଳା ମେଘ ଦୁନିଆକୁ ବଞ୍ଚେଇ ରଖିଛି । ସେ ମହତ, କିନ୍ତୁ ବଡ଼ ବୋଲି ମନ ଭିତରେ ଥିବା ଅହଂକାର ସମସ୍ତଙ୍କୁ ଛୋଟ କରିଦିଏ ।

ବଡ଼ ହୋଇ ସାନ ମାନଙ୍କ ଅଭାବ, ଅସୁବିଧା, ସୁଖ ଦୁଃଖରେ ଯଦି ସାହା ନହେଲେ, ସେ ବଡ଼ିମାର ମୂଲ୍ୟ କ'ଣ..? ସମସ୍ତେ କାନ୍ଦ ବନ୍ଦ କର, ଏ ବାହାଘର ନିଶ୍ଚୟ ହେବ। ମୁଁ ଛୋଟିଆ ପିଲାଟିଏ ସିନା, ହେଲେ ମୋ ପାରୁ ପର୍ଯ୍ୟନ୍ତ ଚେଷ୍ଟା କରି ସବୁ ଗୁଡ଼ାକ ଯୋଗାଡ଼ କରିବି।''



ହେମାଳ ପବନକୁ ସାଥିରେ ଆସିବାକୁ ଇସାରା ଦେଇ ଜୁଳୁଜୁଳିଆ ଛୁଆ ଆଗକୁ ଆଗକୁ ଉଡ଼ିଚାଲିଲା। ପୋଖରୀ ଉପର ଦେଇ ଉଡ଼ି ଯାଉ ଯାଉ ହେମାଳ ପବନ ପଚାରିଲା - ''କ'ଣ ... ଭାରିତ ଟାଣ ଦେଖେଇ ବାହାଘର କରେଇ ଦେବୁ ବୋଲି କହିଲୁ- ଏବେ କରିବୁ କ'ଣ...? ମୁରୁକି ହସୁ ହସୁ ଜୁଳୁଜୁଳିଆ ଛୁଆ କହିଲା '' ଚାଲ...ଚାଲ-ତୁମେ ଆଗଯାଇ ବର ଘରେ କହିଦିଅ ରୋଷଣିହେବ। ତା ଘରଠୁ ପୁରା ବେଙ୍ଗୁଲୀ ଘର ଯାଏ। ସେ ବର ବେଶ ସାଜି ବସିଥାଉ।''

ତର ତରରେ ଏତକ କହି ଜୁଲୁଜୁଲିଆ ଛୁଆ ଟିମ୍ପା ତାର କୁନି କୁନି ଡ଼େଣାକୁ ହଲେଇ ଆଉ ପଛକୁ ନ ଚାହିଁ ଉଡ଼ିଗଲା । ତାର ଯେତେ ସାଙ୍ଗ ସାଥି, ସାଇ ପଡ଼ିଶା, ଚିହ୍ନା ଅଚିହ୍ନା ସଭିଙ୍କୁ ବୁଝାଇ କହିଲା, ନେହୁରା ହେଲା । ଗୋଟାଏ ଭଲକାମରେ ସହଯୋଗ କରିବାକୁ କିଏ କାହିଁକି ଅମଙ୍ଗ ହେବ...? ସମସ୍ତଙ୍କ-ଠୁ 'ହଁ' ଶୁଣି ସାରି ଜୁଲୁଜୁଲିଆ ଛୁଆ ଉଡ଼ି ଚାଲିଲା ଗାଆଁ ମୁଣ୍ଡର ଆମ୍ବ ତୋଟାକୁ । ଖଣ୍ଡେ ଦୂରରୁ ଝିଙ୍କାରୀଙ୍କର ଝିଁ ଝିଁ ସ୍ୱର ତ଼ାକୁ ଶୁଭୁଥାଏ । ଧଇଁସଇଁ ହୋଇ ପହଞ୍ଚି ଯିବା କ୍ଷଣି-ସେଠାରେ ଥିବା ସବୁଠୁ ବୁଢ଼ା ଝିଙ୍କାରୀଟା ପଚାରିଲା, ''କ'ଣ.. ? ତୁ ଏମିତି ଅଣନିଃଶ୍ୱାସୀ ହୋଇ ଧାଇଁଛୁ କାହିଁକି ...?

ଝିଙ୍କାରୀର ପାଦକୁ ଧରି ଜୁଲୁଜୁଲିଆ ଛୁଆ ସବୁକଥା କହିଗଲା । ପ୍ରଥମେ ପ୍ରଥମେ ବୁଢ଼ା ଝିଙ୍କାରୀଟା ଅମଙ୍ଗ ହେଉଥିଲା । କିନ୍ତୁ ପାଖରେ ବସିଥିବା ଝିଙ୍କାରୀର ଝିଅକୁ ଦେଖେଇ ଟିମ୍ପା କହିଲା, '' ଅଜା ! ସିଏ ଯଦି ତୁମର ଏଇ ଝିଅ ହୋଇଥାନ୍ତା, ତୁମେ କ'ଣ ମନା କରନ୍ତ ... ?

ବୁଢା ଝିଙ୍କାରୀର ମନଟା ସତରେ ତରଳି ଗଲା । ମନେ ମନେ କ'ଣ ଭାବି ସେ ଖୁବ୍ ଜୋର୍‌ରେ ଶବ୍ଦ କଲା । ସେଇ ରଡ଼ି ଶୁଣି ଏଣେ ତେଣେ ଥିବା ସବୁ ଝିଙ୍କାରୀ ଗୁଡ଼ାକ ସଙ୍ଗେ ସଙ୍ଗେ ତା ପାଖରେ ଏକଜୁଟ ହୋଇଗଲେ । ବୁଢ଼ା ଝିଙ୍କାରୀ ଠାରୁ ସଙ୍କେତ ପାଇ ମଧୁର ସ୍ୱରରେ ଝିଁ ଝିଁ କରି ସବୁ ଗୁଡ଼ାକ ତା ପଛେ ପଛେ ଉଡ଼ିଚାଲିଲେ । ଜୁଲୁଜୁଲିଆ ଛୁଆ ଟିମ୍ପାର କଥା ମାନି ସବୁ ଜୁଲୁଜୁଲିଆ ଗୁଡ଼ାକ ବି ବେଙ୍ଗୁଲୀ ଘର ସାରୁ ବୁଦା ଠାରୁ ବର ବେଙ୍ଗର ଘରଯାଏ ଖାଲି ଝାକୁ ଝାକୁ କରୁଥାନ୍ତି । ଅମରୀ ଗଛ, କଳମ-କନା ଶିରୀ ବଣ, ଘାସବଣ ସବୁଠି ଖାଲି ଚକମକ ଆଲୁଅ । ଗୋଟିଏ ଜାଗାରେ ମେଳିହୋଇ ବସିଥିବା ଝିଙ୍କାରୀଙ୍କ ଝିଁ ଝିଁ ସ୍ୱର ସତେ ଯେମିତି ମଙ୍ଗଳ ମହୁରୀ ଭଳି ଚାରି ଆଡ଼କୁ ଉଚ୍ଛୁଳେଇ ଦେଲା । ବେଙ୍ଗ ବେଙ୍ଗୁଲୀଙ୍କ ସାରୁବଣରେ ବି କେଁକଟର ହୁଲହୁଲି ଶବ୍ଦର ଗୋଟାଏ ଚହଳ ଲାଗିଥାଏ ।

ହଲି ଦୋହଲି ଖୁପ୍ ଖୁପ୍ କରି ବର ବେଶରେ ଧାଇଁ ଆସୁଥିବା ବେଙ୍ଗର ଟୋପି ଟୋପି ଚନ୍ଦନ ବୋଳା ହୋଇଥିବା ମୁହଁଟା ଖାଲି ଖୁସିରେ କୁରୁଳି ଉଠୁଥାଏ । ପାଖେ ପାଖେ ଭାଇ ବନ୍ଧୁ ସମସ୍ତେ ବରଯାତ୍ରୀ ହୋଇ ନାଚି ନାଚି ଧାଡ଼ିକରି ଚାଲିଥାନ୍ତି । ରାତିଟା ସାରା ବାହାଘର ର ମଉଜଟା ବେଶ୍ ଜମିଗଲା । ରାତି ପାହାନ୍ତିରୁ ବର କନ୍ୟା ବିଦା ହେବା ପରେ ହେମାଳ ପବନ ଜୁଳୁଜୁଳିଆ ଛୁଆକୁ ପାଖକୁ ଡାକି କହିଲା- "ସାବାସ୍ ଟିମା ! ଛୋଟ ଛୁଆଟିଏ ହେଲେ କ'ଣ ହେବ, ତୋ'ର ସାହସ ଆଉ ପରୋପକାର ଗୁଣ , ତୋତେ ସତରେ ବଡ଼ କରିଦେଲା । "

ପାଖରେ ବସି ଏ ସବୁ ଶୁଣୁଥିବା ବୁଢ଼ା ଝିଙ୍କାରୀ କହିଲା " ଆଉ କଳା ମେଘ...?"



ପୋଖରୀ ପାଣିରୁ ମୁହଁ ଫେରାଇ ହେମାଳ ପବନ କହିଲା "କଳାମେଘ..? ସେ'ତ ତା'ର ଅହଂକାର ସକାଶେ ଜୁଳୁଜୁଳିଆ ଛୁଆ ଟିମା ପାଖରେ କେତେ ଛୋଟ ...ନିଜକୁ ଖାଲି ବଡ଼ ବୋଲି ଦେଖେଇ ହେଲେ କ'ଣ ହେବ... ? ଛୁଆଟିଏ ହୋଇ ଥାଉ ପଛେ, ନିଜର ବୁଦ୍ଧି, ସାହସ , ପରିଶ୍ରମ ଆଉ ପରୋପକାର ଗୁଣ ଥିଲେ ନିଶ୍ଚୟ ସମସ୍ତେ ଧନ୍ୟ ଧନ୍ୟ କରିବେ । ସିଏ ବି ହେବ ସମସ୍ତଙ୍କ ଆଖିରେ ପ୍ରକୃତ ବଡ଼ ଆଉ ମହତ । "

ଆଁ କରି ହେମାଳ ପବନର କଥା ଗୁଡ଼ାକ ସତେ ଯେମିତି ଗିଳି ଯାଉଥିବା ମୁରବି ବେଙ୍ଗଟା ମୁଣ୍ଡଟାକୁ ଜୋରରେ ଟୁଙ୍ଗାରି ଦେଇ କହିଲା, "ହଁ.ହଁ... ସତକଥା କହିଲଏକା..."।



# ନିଜକୁ ସୁଧାର ନିଜେ



ପୁଅର ବିକଳ ରଡ଼ି ଶୁଣି କେତକୀ ବଣ ଗାତ ଭିତରୁ ବାହାରି ଆସିଲା ଚମ୍ପେଇ । ପିଲାଟା କାନ ମୁଣ୍ଡାକୁ ରାମ୍ପୁଡ଼ି ରାମ୍ପୁଡ଼ି ସରୁ ଲାଞ୍ଜଟାକୁ ପିଟି ବିକଳ ହୋଇ ତଳେ ଏମୁଣ୍ଡରୁ ସେ ମୁଣ୍ଡ ଗଡୁଥାଏ । ପୁଅକୁ ଦେଖି ଚମ୍ପେଇ କାବା ହୋଇଗଲା । ଗଲାବେଳେ ତ ହସି ଖୁସି ବାହାରକୁ ଗଲା । ଏମିତି ଆକୁଳ ହୋଇ ଗଡୁଚି କାହିଁକି ? ମାଆ ମନତ - କେତେ ଆଉ କେତେ କଥା ଭାବିଗଲା । ପାଖକୁ ଯାଇ ପଚାରିଲା- କ'ଣ ହେଲା ତୋର ? ଏମିତି ଗଡୁଛୁ କାହିଁକି....?

ବକଟେନାକୁ ମୂଷାଛୁଆ ଚିଣ୍ଟୁଆ, ମାଆକୁ ଦେଖି କାନ୍ଦି କାନ୍ଦି କହିଲା...'' ରଙ୍ଗି ଉଈର ଛୁଆଗୁଡ଼ା ମୋ କାନ ମୁଣ୍ଡା ଆଉ ମୁହଁସାରା କାମୁଡ଼ି ପକେଇଲେ । ଭାରି କାଟୁଛି ମତେ ।''

ପୁଅ କଥା ଶୁଣି ଚମ୍ପେଇର ରାଗ ତାଳୁକୁ ଚଢିଗଲା, କହିଲା - ''କ'ଣ କହିଲୁ..? ରଙ୍ଗି ଛୁଆଙ୍କର ଏଡ଼େ ବହପ...! ସେ ମୋ ପୁଅକୁ କାମୁଡ଼ିଛନ୍ତି..ଚାଲ୍ ତା ପାଖକୁ। ମତେ କ'ଣ ସେ ଚିହ୍ନିନି..?

ପୁଅକୁ ସାଙ୍ଗରେ ନେଇ ଚମ୍ପେଇ ଗଜା ତାଳଗଛ ମୂଳ ଉଇ ହୁଙ୍କା ପାଖରେ ପହଞ୍ଚି ଗଲା । ଗର୍ଜନ କରି ଡ଼ାକ ପକେଇଲା ''ଏ' ରଙ୍ଗି ! ବାହାରି ଆ' ଘରୁ । ତୋ ଛୁଆଙ୍କୁ ଡ଼ାକ୍ । କେଡେ ବହପ ତମର ...! ଆ'ରେ... ମୋ' ଛୁଆଠି ତମେ ଦାନ୍ତ ବସେଇ ଦେଲ! ''

ରଙ୍ଗି ଉଇ ଚମ୍ପେଇର ଗର୍ଜନ ଶୁଣି ବାହାରି ଆସଲା, ପଛେ ପଛେ ଛୁଆ ସବୁ ତା'ର ଧାଡ଼ି ଲାଗିଥା'ନ୍ତି । ସବୁଠୁଁ ସାନ ଦିଶୁଥିବା ଉଇ ଛୁଆଟି ଚିଞ୍ଚୁଆ ଆଡ଼କୁ ଚାହିଁ କହିଲା- ''ଆମର ଏଡ଼େ ସୁନ୍ଦର ଘରକୁ ଭାଙ୍ଗିଦେଲା- ଆଉ...ଆମେ କ'ଣ ତାକୁ ଛାଡ଼ି ଦିଅନ୍ତୁ...?

ଚମ୍ପେଇର ରାଗ ଆହୁରି ବଢ଼ିଗଲା । ରାଗ ତମତମ ହୋଇ କହିଲା -''ପିଲାଲୋକ, ଅଜାଣତରେ ଗାତ ଖୋଳି ଖୋଳି ଯଦି ତମ ଘର ପାଖରେ ପହଞ୍ଚିଗଲା-ହେଲା କ'ଣ ?''

ରଙ୍ଗି କହିଲା-''ଘର ଭାଙ୍ଗି ଖୋଳି ତାଡି ମୋ ଛୁଆଙ୍କୁ ଉଚ୍ଛନ୍ନ କରିଦେଲା । କହୁଛୁ କ'ଣ ନା, ହେଲା କ'ଣ ? ହଇଲୋ ଚମ୍ପେଇ ! ତମ ମୂଷାଗୁଡ଼ାକ କ'ଣ ଖାଲି ନଷ୍ଟ କରିବା ଜାଣ ? ମୋ ଜନମ କାଳରୁ ମୁଁ ତ ସେଇଆ ଦେଖି ଆସୁଛି । ଦରକାର ନଥିଲେ ବି ଖୋଳି ତାଡ଼ି, କାଟି କୁଟି ସବୁ ନଷ୍ଟ କରିଦିଅ । ''

ଖିଙ୍କାରି ଉଠି ଚମ୍ପେଇ କହିଲା...''କ'ଣ ଏମିତି ଦେଖିଲୁ ଯେ, ଆମ ମୂଷା ଜାତିର ନାଆଁ ଧରି ପକେଇଲୁ...ଆମେ ସବୁ ନଷ୍ଟ କରି ଦେଉଛୁ- ଆଉ ତମେ ଉଇ ଗୁଡ଼ା କ'ଣ ଭାରି ଭଲ ? ତମେ କଣ କାଟି କୁଟି ନଷ୍ଟ କରୁନ ?? ''

ଟିକିଏ ଆଗକୁ ମାଡ଼ି ଆସି ରଙ୍ଗି କହିଲା ''ହଁ, ତୁ ଯାହା କହିଲୁ-ସତ କଥା । ହେଲେ ତମ ପରି ଆମେ ତୁଚ୍ଛାକୁ କିଛି କଟା କଟି କରୁନୁ । ପେଟ ପାଇଁ ତ ଏତେ ନାଟ । ଆମର ଯେତିକି ଦରକାର -ଆମେ ସେତିକି ଖାଉ, ବଳକା କିଛି ସାଇତି ରଖୁ । ହେଲେ, ତମେ ଗୁଡ଼ା କରୁଛ କ'ଣ ?''

ଆଗକୁ କୁଦିପଡ଼ି ଚିଣ୍ଟିଆ କହିଲା - ''କ'ଣ କରୁଛୁ ?''

ରଙ୍ଗିଚିକେ ହସି ଦେଇ ବାଆଁ ପଟକୁ ମୁଣ୍ଡ ବୁଲାଇ କହିଲା- ''ହେଇ ଦେଖ...ହୁଡ଼ା ତଳର ସେ ଧାନ ଜମିଟା, - ଜମିଟା ସାରା ଖାଲି ଗାଡ଼ । ଧାନ କେଣ୍ଡାଗୁଡ଼ା କାଟି କୁଟି ବୋହି ନେଇ ସବୁ ଗାଡ଼ରେ ଜମାଇ ଦେଇଛ । ସେ ଗୁଡ଼ା ସବୁ କ'ଣ ତମ କାମରେ ଲାଗିବ ? ନା, ତମେ ସବୁ ଯାକ ଖାଇବ ? ''

''ଆମେ ସବୁଗୁଡ଼ା ଖାଇବୁ ନାହିଁ ବୋଲି ତୁ କେମିତି ଜାଣିଲୁ ?''

ଚମ୍ପେଇ କଥା ଶୁଣି ରଙ୍ଗି କହିଲା- ''ପିଲାଟି କାଳରୁ ତ ମୁଁ ଦେଖି ଆସୁଛି- ବର୍ଷ ବର୍ଷ ଧରି କେତେ ଜମି ବାଡ଼ି ଘରଦ୍ୱାର ଖୋଳି ତାଡ଼ି ନଷ୍ଟ କରୁଚ, କେତେ କୁଆଡ଼େ ଖାଦ୍ୟ ଶସ୍ୟ ଲୁଚେଇ ରଖୁଛ ଯେ-ଟୋପାଏ ବରଷା ପାଣି ପଶିଗଲେ ସବୁ ଗୁଡାକ ନଷ୍ଟ ହୋଇ ଯାଉଛି । କେବେ ଥରେ ଭାବିଛ ? ଯିଏ ଏତେ ପରିଶ୍ରମ କରି ଫସଲ ଉପୁଜାଉଛି ତାକୁ କେତେ ବାଧୁଥିବ ? ତୁମେ ତ ପରିଶ୍ରମ କରି ଗଢିଜାଣିନ-ତମକୁବାଧିବ କାହିଁକି ....? ନଷ୍ଟ କରିବା, ଚୋରି କରିବା, ଖୋଳି ତାଡ଼ି ଧ୍ୱଂସ କରିବା ତମର ପ୍ରକୃତି ।''

ଥରକୁ ଥର କାନ କୁଣ୍ଡେଇ ଚୁପ୍ ଚାପ୍ ବସିଥିବା ଚମ୍ପେଇ କହିଲା -''ଆମେ ତ ପଶୁ । ଏତେ କଥା ବୁଝିବୁ କାହିଁକି...?

ଚମ୍ପେଇ ଠାରୁ କଥା ଛଡ଼େଇ ରଙ୍ଗି କହିଲା -''ଦେଖୁନୁ- ତମରି ଭଳି ମଣିଷ ଗୁଡ଼ା ବି ସେଇଆ । କାହିଁ କେଉଁ ପୁରୁଣା କାଳରେ - ଏ ଦେଶକୁ ଶତ୍ରୁ ଆସି ଧନ ଲୋଭରେ କେତେ ମନ୍ଦିର, ରାଜଉଆସ ଭାଙ୍ଗି ରୁଜି ଛାରଖାର କରିଦେଲେ । ଧନତ ନେଲେ, ଏସବୁ ଭାଙ୍ଗିବାରେ କି ଆନନ୍ଦ ମିଳିଲା...? ଏବେ ବି ଦେଖୁଛି ସେଇ ଏକା କଥା । କଥା କଥାକେ ଯୁଦ୍ଧ, ବୋମା ଫୁଟାଫୁଟି । ହେଲେ, ସେଥିରୁ ମିଳୁଛି କ'ଣ....? କେହି କ'ଣ କାହାକୁ ଜବଦ୍ କରି ପାରୁଛି ? ଖାଲି ରାଗ ବଢୁଛି ସିନା - ଛୋଟିଆ ଛୋଟିଆ କଥାରେ

ମଣିଷ ଗୁଡ଼ା ବାଡ଼ିଆ ପିଟା, ପୋଡ଼ାଜଳା ଆଉ ଚୋରିଡକାୟତିରେ ମାତିଛନ୍ତି । ଭାଙ୍ଗିବା ଆଉ ନଷ୍ଟ କରିବା ଅଭ୍ୟାସଟା–ତମ ମୂଷା ଗୁଡ଼ାଙ୍କଠାରୁ ମଣିଷ ମାନଙ୍କ ଭିତରେ ବି ବ୍ୟାପିଗଲାଣି । ବରଷ ବରଷ ପରିଶ୍ରମରେ ଗଢ଼ି ଠିଆ କରିଥିବା ଗାଆଁ, ଗଣ୍ଡା, ସହର ଯୁଦ୍ଧ କରି ଘଡ଼ିକରେ ଛାରଖାର କରି ଦେଉଛନ୍ତି । ଗଢ଼ିବାକୁ ସିନା ବରଷ ବରଷ ଲାଗୁଛି, ହେଲେ–ଭାଙ୍ଗିବାକୁ ତ ନିମିଷେ । ଗଢ଼ିବା ବେଳର ସେଇ ଆଶା ଆଉ ଆନନ୍ଦ –ଘଡ଼ିକରେ ମାଟିରେ ମିଶିବାର ଦେଖିଲେ ଦେହ ବା ସହିବ କେମିତି –? ଏଇ ଦେଖୁନୁ ଦିନ ଦିନ ପରିଶ୍ରମ କରି ମୋ ଛୁଆ ଯେଉଁ ଘରକୁ ଗଢ଼ିଥିଲେ–ତୋ ଛୁଆ ତାକୁ ମୁହୂର୍ତ୍ତରେ ଭାଙ୍ଗିଦେଲା । ହେଲେ, ପାଇଲା କ'ଣ ..? ଗଢ଼ିବାରେ ଯେଉଁ ଆନନ୍ଦ–ତା' କ'ଣ ଭାଙ୍ଗିବାରେ ମିଳିବ ..?



ଗୋଲ୍ ଗୋଲ୍ ଆଖି ଦୁଇଟାରୁ ଟୋପା ଟୋପା ଲୁହ ଗଡ଼େଇ ଚମ୍ପେଇ କହିଲା–'' ଆମର ଦୋଷ କ'ଣ ? ବାପ, ଅଜା ଚଉଦ ପୁରୁଷ ଅମଳରୁ ଆମେ ତ ଖୋଳି ତାଡ଼ି ନଷ୍ଟ କରିବା ଶିଖି ଆସିଛୁ । ଆମ ପରିବାର ଆଉ..ପରିବେଶ ଆମକୁ ସେଇଆ ଶିଖେଇଛି । ଏବେ ଆମକୁ ଆଉ ସୁଧାରିବ କିଏ ...??''

ହସି ହସି ଚମ୍ପେଇ ପାଖକୁ ଲାଗିଯାଇ ରଙ୍ଗି କହିଲା ''ସୁଧାରିବ ଆଉ କିଏ ..? ତମେ ନିଜେ ଚାହିଁଲେ.. ନିଜକୁ ନିଶ୍ଚୟ ସୁଧାରିବ ପାରିବ । ''

# ସବୁରି ମୂଳେ ସ୍ନେହ-ଆଦର



ଘସି ଭାଡ଼ିତଳକୁ ଗଳି ଆସୁଥିବା ପୁଷି ଆଉ ଲୁସିକୁ ଦେଖି ଜିମି, ଟମି ଦି'ଜଣ ଯାକ ଧାଇଁଗଲେ ଖୁସିରେ । ଲାଙ୍ଗୁଡ଼ ହଲେଇ ହଲେଇ ଜିମି ପଚାରିଲା-ତମର ଆଜି ଏତେ ଡେ଼ରି ହେଲା କ'ଣ ? ଖେଳିବା ବୋଲି ଘସି ଭାଡ଼ିତଳେ କେତେବେଳୁ ଆମେ ଚାହିଁଛୁ ।

ଟିକିଏ ଏଣିକି ତେଣିକି ଚାହିଁ ପୁଷି କହିଲା-ବୁଝିଲୁ ଜିମି, ମୋ ମାଆ ନା...ତୁମ ସାଙ୍ଗରେ ମିଶିବାକୁ ଆଜି ଆମକୁ ସଫା ମନା କରିଦେଲା । ଆମେ ଦି' ଭଉଣୀ ତୁମ ସାଙ୍ଗରେ ଆଉ ଜମା ଖେଳିବୁନି । ଏବେ ସିନା ମାଆକୁ ଲୁଚି ତୁମ ପାଖକୁ ଆସିଛୁ । ହେଲେ ମାଆ ଦେଖିଲେ ଭାରି ରାଗିବ ।

ପୁଷିର ଏକଥା ଶୁଣି ଜିମି କାବା ହୋଇଗଲା । ଏତେ ଦିନ ତ

ସାଙ୍ଗ ହୋଇ ଖେଳୁଥିଲେ, ଏବେ ପୁଣି କ'ଣ ହେଲା ...?

ଆବାକାବା ହୋଇ ଚାହୁଁଥିବା ଜିମିକୁ ଦେଖି ପୁଷି କହିଲା- "ଆଜି ସକାଳେ ମୋ ମାଆ କହୁଥିଲା—ତୋ ମାଆ ଆଉ ମୋ ମାଆ ଛୋଟଥିଲା ବେଳେ ଆମରି ପରି ବି ସାଙ୍ଗ ହୋଇ ଖେଳୁଥିଲେ, ହେଲେ ଧୀରେ ଧୀରେ ବଡ଼ ହେବା ପରେ ସେମାନଙ୍କ ସାଙ୍ଗ ଭାଙ୍ଗିଗଲା । ତୋ ମାଆ ମୋ ମାଆକୁ ଦେଖିଲେ ଖାଲି କାମୁଡ଼ି ଗୋଡ଼ାଇଲା । କ'ଣ ତା'ର ହେଲା କେଜାଣି ? ଆମେ ବି ବଡ଼ ହୋଇଗଲେ ସେଇଆ ହେବାନା...? ତୁ କ'ଣ ସତରେ ଆମକୁ ମାରି ଗୋଡ଼େଇବୁ ...?

ଜିମି କହିଲା-ଧେତ୍, ଏମିତି କାହିଁକି ହେବ ? ଦେଖୁନୁ-ଆମେ କେତେ ସାଙ୍ଗ..ଆଉ ଶେଷଯାଏ ବି ଏମିତି ରହିବା ।

ଆଗକୁ ଦି' ପାଦ ମାଡ଼ି ଆସି ଲୁସି କହିଲା-ଚାଲ୍ ପୁଷି, ପଳେଇଯିବା, ଏମାନଙ୍କୁ ଜମା ବିଶ୍ୱାସ ନାହିଁ, ମାଆ କହୁନଥିଲା- ଏମାନେ କ'ଣ ଆମ ଜାତିର ? ପିଲା ବେଳେ ସାଙ୍ଗ ହୋଇ ଖେଳିବେ, ବୁଲିବେ, ଆଉ ବଡ଼ହେଲେ ପାଖ ପୂରେଇ ଦେବେନି । ଦେଖିଲେ ଖେଙ୍କି ଗୋଡ଼େଇବେ। ବେଳେବେଳେ ଏଇ କୁକୁର ଗୁଡ଼ାକ ଆମ ବିଲେଇ ଜାତିର କେତେକଙ୍କୁ ମାରି ବି ଦେଇଛନ୍ତି । ଆ.. ପଳେଇ ଯିବା । ତେଣେ ମାଆ ଖୋଜୁଥିବ ।

ଲୁସିର କଥା ଶୁଣି ଜିମିର ଆଖି ଯୋଡ଼ାକ ଲୁହ ଛଳ ଛଳ ହୋଇଗଲା । ତୁଚ୍ଛାଟାରେ କ'ଣ କହୁଚି ଲୁସି ଏସବୁ ...?

ଜିମିର ବେକ ମୂଳକୁ ଚାଟି ଦେଉ ଦେଉ ପୁଷି କହିଲା- ହଇରେ ଜିମି !! ବଡ଼ ହୋଇଗଲେ ସମସ୍ତେ କ'ଣ ଏମିତି ହୋଇଯାଆନ୍ତି ? ଏତେ ଭେଦ, ବିଭେଦ, ରାଗ, ହିଂସା, ମାରି ଖାଇ ଯିବାକୁ ଇଚ୍ଛା ଆସେ କୁଆଡୁ ...? ଯିଏ ବଳୁଆ ହେବ, ସେ

କ'ଣ ସମସ୍ତଙ୍କୁ ଏମିତି ଚପେଇ ରଖିବ ?

ଜିମି ମୁଣ୍ଡରେ ସେସବୁ କଥା କିଛି ପଶୁନଥିଲା । ସେ ଖାଲି ଭାବୁଥିଲା-ପିଲା ଦିନର ଏ ସାଙ୍ଗ ସୁଖକୁ କ'ଣ ସତରେ ଭୁଲିଯାଇହେବ ...! ସେ ନିଶ୍ଚୟ ମାଆକୁ ପଚାରି ସତ କଥାଟା ବୁଝିବ ।



ପୁଷି ଆଉ ଲୁସି ଫେରିବା ପରେ ଟମିକୁ ସାଙ୍ଗରେ ଧରି ଜିମି ଘରକୁ ଫେରିଲା । ସେଦିନ ଦି' ପହରକୁ ମାଆ ପେଟେ ଖାଇ ଗୁହାଳ ପିଣ୍ଡାରେ ଢୁଳାଉ ଥିବା ବେଳେ ମାଆ ପାଖରେ ଲାଞ୍ଜ ହଲେଇ ହଲେଇ ଜିମି ଭାରି ଗେହ୍ଲା ହେଲା । ମାଆ କାନକୁ ମିଛଟାରେ ପାଟିରେ ପୂରେଇ ତା' ଉପରେ ଗଡେଇ ଗଡେଇ ହୋଇ ଜମା ଶୁଆଇ ଦେଲାନି ତାକୁ । ଶରଧାରେ ମୁଣ୍ଡ ଉପରକୁ ଟେକି ମାଆ ତାର ଅନେଇବାରୁ ଜିମି କହିଲା, ମାଆ ! କଥାଟେ ପଚାରିବି, ସତ କହିବୁ ତ...?

ଜିମି ମୁହଁରେ ମୁହଁକୁ ଘଷି ମାଆ କହିଲା-ପଚାରୁନୁ । ଜିମି ପଚାରିଲା- ''ମା' ! ତୋର ପୁଷି ଆଉ ଲୁସି ମାଆ ସହିତ ପିଲାଦିନରୁ କ'ଣ ପଡୁନଥିଲା...? ଏବେ ଦେଖିଲେ, ତୁ ତାକୁ ଯେମିତି କାମୁଡ଼ି ଗୋଡ଼ାଉଛୁ, ସେବେ କ'ଣ ସେମିତି

ହେଉଥିଲା..?''

ମାଆ କହିଲା ''ନାହିଁରେ, ସେ ଅଲଗା ଜାତି ହେଲେ ବି ଆମେ ଦିହେଁ ଭାରି ସାଙ୍ଗ ହେଉଥିଲୁ । ମାଲିକ ଆମ ଦି ଜଣଙ୍କୁ ବଡ଼ ଆଦର କରୁଥିଲେ । ଏକାଠି ଖାଇବାକୁ ଦେଉଥିଲେ, ଏକାଠି ଖେଳାଉଥିଲେ । ମୋର ମନେ ଅଛି-ଶୀତଦିନ ସକାଳେ କଅଁଳିଆ ଖରା ଯେତେବେଳେ ଦାଣ୍ଡ ଅଗଣାରେ ପଡୁଥିଲା— ଆମେ ଦି' ଜଣଯାକ ମାଆ କୋଳରୁ ଡ଼େଇଁ ଡ଼େଇଁ ବାହାରି ଆସୁଥିଲୁ । ଆମ ସାଙ୍ଗରେ ବଉଳୀ ଗାଈର କୁନି ବାଛୁରୀ ଚୂନୀ ମଧ୍ୟ ମିଶିଯାଉଥିଲା । ଆମ ତିନିଜଣଙ୍କ ଖେଳ କଉତୁକରେ ସଭିଏଁ ଖୁସି ହୁଅନ୍ତି । ସକାଳଟା କେତେ ମଜାରେ କଟୁଥିଲା । କିନ୍ତୁ ଆମେ ଯେତେବେଳେ ବଡ଼ ହେଲୁ, ଆଉ ସେ ସାଙ୍ଗ ସୁଖ ରହିଲାନି । ପୁଷିର ମାଆକୁ ଆଦରକରି ମାଲିକ ଘରେ ରଖିଲେ । ସିଏ ତାଙ୍କ ଶୋଇବା ଘରଠୁ-ରୋଷେଇ ଘରଯାଏ ସବୁଠି ବୁଲିଲା । ହେଲେ ମୋତେ ଦାଣ୍ଡ ଦୁଆର ଭିତରକୁ ବି ଛାଡିଲେନି । ଶୀତ, ଖରା, ବର୍ଷା ସବୁବେଳେ ମୁଁ ଏଇ ଗୁହାଳ ପିଣ୍ଡା, ଘସି ଭାଡ଼ି ଆଉ ଢିଙ୍କି ଶାଳରେ ପଡିରହିଲି । ବଉଳୀ ଛୁଆ ବେକରେ ପଘାଲାଗି ଖୁଣ୍ଟରେ ବନ୍ଧା ହେଲା । ଆମ ହସ, କଉତୁକ ସବୁ ସରିଗଲା । ମୁଁ ନିହାତି ଏକୁଟିଆ ହୋଇଗଲି । କେବେ କେମିତି ପୁଷିର ମାଆ ସାଙ୍ଗେ ଦେଖାହେଲା ତ, ସେ ଆଉ ଭଲରେ କଥା ହେଲାନି । ଯେବେବି କଥା ହେଲା, ମାଲିକ ଘରେ କେମିତି ଆରାମରେ ଅଛି ସେଇକଥା ଫୁଲେଇ ହୋଇ ଗପିଲା । ମତେ ସିନା ଶୁଖିଲା, ଅଇଁଠା ରୁଟି ଖଣ୍ଡେ ମିଳୁ ନଥିଲା, ତାକୁ କିନ୍ତୁ ମାଲିକାଣି କ୍ଷୀର-ଭାତ ଆଉ କେତେ ଦରବ କୁଆଡ଼େ ନିଇତି ଖାଇବାକୁ ଦେଉଥିଲେ । ଖାଇବା ବିନା ମୋ ଦେହରେ ହାଡ଼ ସବୁ ଗଣିହୋଇ ଯାଉଥିବା ବେଳେ ପୁଷି ମାଆଟା' ବି ସତରେ କେମିତି ଗୋଲ୍‌ଗାଲ୍ ବନି ଯାଇଥିଲା । ଏସବୁ ଦେଖି ମୋ ରକ୍ତ ମାଂସର ଦେହ ବା ସହନ୍ତା କୁଆଡୁ...? ମୁଁ ବି ତାକୁ ଦେଖିଲେ ରାଗରେ କାମୁଡ଼ି ଗୋଡ଼େଇଲି । ସମସ୍ତେ

କହିଲେ-କୁକୁର-ବିଲେଇଙ୍କ ଜାତି ଅଲଗା । ପଡ଼ିବ କୁଆଡୁ..? ହେଲେ ସେଥିଯୋଗୁଁ ନୁହେଁ-ପ୍ରକୃତରେ ଆମ ଦି' ଜଣଙ୍କ ମନ ମିଶିଲାନି । ତା ଫୁଲେଇପଣିଆ ଦେଖି ମୋ ମନରେ ରାଗ ଆଉ ଘୃଣା ହେଲା । ପିଲା ଦିନର ସେ ସାଙ୍ଗ ସୁଖ ଭିତରେ ତା ଫୁଟାଣି ଗୁଡ଼ାକ ବା ମୁଁ ସହନ୍ତି କେମିତି ...? ଜିମି ମନେ ମନେ ଭାବୁଥିଲା-ବଡ଼ ହୋଇଗଲେ ମନ ଭିତରକୁ ଯେତେସବୁ ଛନ୍ଦ, କପଟ, ଅହଂକାର, ଆଉ ସ୍ୱାର୍ଥପରତା । ପିଲାଦିନର ସରଳ ବନ୍ଧୁତା, ଭଲ ପାଇବା ସବୁ କ'ଣ କୁଆଡ଼େ ଉଭେଇ ଯାଏ...? ତା ଜାଗାକୁ ଆବୋରି ବସେ ଖାଲି ଜାତି-ଅଜାତି ଭେଦ ଭାବ, ଗର୍ବ, ଅହଂକାର ଆଉ ସ୍ୱାର୍ଥପରତା । ହେଲେ ପିଲାମାନଙ୍କର ତ କିଛି ଜାତି ନଥାଏ.. ତେଣୁ ଏତେ ସବୁ ଭେଦଭାବ, ଗର୍ବ, ଅହଂକାରକୁ ସେ ମାନିବେ କାହିଁକି ?

ସେଇଦିନଠାରୁ ଜିମି, ଟମି, ପୁଷି ଆଉ ଲୁସିଙ୍କର ବାଡ଼ିପଟ କୁକୁଡ଼ା ଭାଡ଼ିଟା ହୋଇଗଲା ସାଙ୍ଗ ସୁଖ ଆଉ ହସକଉତୁକର ଜାଗା । ସେଇ କୁକୁଡ଼ାଭାଡ଼ି ତଳେ ସେମାନେ ଯାହା ହେଲେବି ଲୁଚି ଛପି ଦିନରେ ଗୋଟିଏ ଥର ଏକାଠି ହୁଅନ୍ତି । ସେମାନଙ୍କ ଖୁସି ଗପରେ ନାଲି ଛଉକା ଗଞ୍ଜାଟି ମଧ୍ୟ ଏବେ ଯୋଗ ଦେଇଛି । ଖେଳ କଉତୁକ ଆଉ ମଉଜ ଭିତରେ ବେଳ କେତେ ଚଞ୍ଚଳ ଗଡିଯାଉଛି ଜମା ଜଣା ପଡୁନାହିଁ ।

ସେଇଖେଳ କଉତୁକର ଜାଗାଟା ଉପରେ ଦିନେ ଗୋଟାଏ ଚଗଲା ବିଲୁଆର ନଜର ପଡ଼ିଲା । ବୁଦା ଉଢାଳରୁ ଛଉକା ଗଞ୍ଜାକୁ ଦେଖି ପାଟିରୁ ତା'ର ଲାଳ ଗଡୁଥିଲେ ବି ଏ ଗହଳି ଭିତରେ.. କେମିତି ବା ସେ ତାକୁ ଧରିବ.. ? ଏଇକଥା ଭବୁ ଭାବୁ ଜିମି, ଲୁସି ଆଉ ଛଉକା ଗଞ୍ଜାଟା ଗୋଟିଏ ବେଙ୍ଗ ଛୁଆ ପଛରେ ଗୋଡ଼େଇ ଗୋଡ଼େଇ ସେଇ ବୁଦା ଆଡ଼କୁ ମାଡ଼ି ଆସିଲେ । ଏ ମଉକାକୁ ବିଲୁଆ କ'ଣ ଆଉ ହାତଛଡ଼ା କରନ୍ତା.. ଏକା ଡ଼ିଆଁକେ ବାହାରି ପଡ଼ିଲା ବୁଦା ଭିତରୁ। ହେଲେ ଛଉକା ଗଞ୍ଜାଟା ବି ବଡ଼ ଟକୋ । ବିଲୁଆ

ଡ଼େଇଁବା ଶବ୍ଦ ଶୁଣି ସେ ଫଡ଼୍ କିନା ଉଡ଼ିଗଲା ଗଛ ଉପରକୁ ।
ବିଚରା ବିଲୁଆ ବା ଆଉ କରନ୍ତା କ'ଣ..ଶିକାର ପାଇଁ ବାହାରିଛି
ଯେତେବେଳେ ଖାଲି ମୁହଁରେ ବି ଫେରିବ କେମିତି ? ତେଣୁ ବିଲେଇ
ଛୁଆ ଲୁସିକୁ ଖାପ୍ କିନା ଟେକିନେଇ ଧାଇଁଲା । ଲୁସିକୁ ଟେକିନେବା
ଦେଖି ଜିମି ବି କୁଦାମାରି ଧାଇଁଲା ବିଲୁଆ ପଛେ ପଛେ ।

ଟମି, ପୁଷି ଆଉ ଛଉକା ଗଞ୍ଜାର ଛାନିଆ ରଡ଼ିରେ ଜାଗାଟା
ଫାଟି ପଡ଼ିଲା । ଜିମିର ମା' ଗୁହାଳ ପିଣ୍ଡାରୁ ଧାଇଁ ଆସିଲା । କଖାରୁ
ଭାଡ଼ିରେ ଏଣ୍ଡୁଅକୁ ଛକି ବସିଥିବା ପୁଷିର ମାଆ ଅତରଛରେ
ଧପାଲି ଆସିଲା । କ'ଣ ହେଲା ଦେଖିବାକୁ ଘର ଭିତରୁ ମାଲିକ,
ମାଲିକାଣୀ ଆଉ ସମସ୍ତେ ଦଉଡ଼ି ଆସିଲେ । ହେଲେ କଥା କ'ଣ
କେହି ବୁଝିପାରିଲେ ନାହିଁ । ମାଲିକଙ୍କ ସାନ ଝିଅ ମାମା କହିଲା-
ଜିମି ନିଶ୍ଚେ ଲୁସିକୁ ମାରି ଖାଇବାକୁ ନେଇ ପଳାଇଛି । କାହିଁ, ସେ
ଦିଜଣ ତ ଦେଖା ଯାଉନାହାନ୍ତି ?

ସତରେ, ଲୁସି ଆଉ ଜିମିକୁ ଛାଡ଼ି ସବୁ ଜନ୍ତୁ ଗୁଡ଼ାକ ତ
ଅଛନ୍ତି । ତେଣୁ ମାମା କଥାକୁ ବିଶ୍ୱାସ କରିଗଲେ ସମସ୍ତେ ।
ପୁଷିର ମାଆ ରାଗରେ ଖାଲି ଗାଉଁଗାଉଁ ହେଉଥିଲା । ରାଗରେ
ଜିମି ମାଆକୁ ପୁଳାଏ କାମୁଡ଼ି ଦେଲା ସେ । ଜିମି ମାଆ ବା
ଛାଡ଼ିବ କାହିଁକି...? ସେ ବି ଜୋର୍‌ରେ ଭିଡ଼ି ଆଣିଲା ପୁଷି ମାଆର
ଲାଞ୍ଜକୁ । ଛଉକା ଗଞ୍ଜା ସତ କଥାଟା କହୁଥିଲେ ବି ତା କଥାକୁ
କେହି ଶୁଣୁନାହାନ୍ତି । ତେଣେ ଜିମି ଆଉ ପୁଷି କାନ୍ଦି କାନ୍ଦି
ନୟାନ୍ତ । ଠିକ୍ ଏତିକି ବେଳକୁ ଜିମି ଲହୁ ଲୁହାଣ ଲୁସିକୁ ଧରି
ପହଞ୍ଚିଗଲା । ଲୁସିକୁ ଏମିତି ଦେଖି ସମସ୍ତେ କାବା । ମାଆ
ତା'ର ଦଉଡ଼ି ଯାଇ ଚାଟି ପକାଇଲା ତାକୁ । ଚାଟି ଚାଟି ଖଣ୍ଡିଆ
ଜାଗାକୁ ସଫା କରିଦେଲା । ଟିକିଏ ସୁସ୍ଥ ହେବାରୁ ଲୁସି ସବୁକଥା
କହିଲା । ସତକଥା ଶୁଣିବାପରେ ମାଆ ତା'ର ଲାଜରେ ଜମା
ଚାହିଁପାରୁ ନଥିଲା । ମିଛଟାରେ ସିନା ଜିମିକୁ ଦୋଷ ଦେଇ ତା'

ମାଆ ସାଙ୍ଗରେ ସେ କଳି କରୁଥିଲା ।

ଜିମି ମାଆ କହିଲା - " ଦେଖିଲୁ ପୁଷି ମାଆ ! ଜିମି ମୋର କେତେ ବୁଦ୍ଧିଆ.. ଆମେ ସିନା ଜାତି ଅଲଗା ବୋଲି ନିଜ ଭିତରେ କଳି କରୁଛୁ, ହେଲେ ସିଏ ସେଇଆ ଭାବୁଥିଲେ, ତୋ ପିଲା କ'ଣ ଆଜି ଥାଆନ୍ତା ?

ଜିମି, ଟମି ଆଉ ପୁଷି ଲୁସିର ଖଣ୍ଡିଆ ଜାଗାକୁ ଚାଟି ଚାଟି ସଫା କରୁଥିଲେ । ବଡ଼ ଖୁସିରେ ଛଉକା ଗଞ୍ଜାଟା ତା ଭାଡ଼ିରୁ ଚାହିଁ ରହିଥିଲା । ଜିମି ମାଆ ଠିଆ ହୋଇ ଛୁଆମାନଙ୍କ ଆଦର ସ୍ନେହକୁ ଆଗ୍ରହରେ ଖାଲି ଦେଖୁଥିଲା ।



ପୁଷି ମାଆ ଘୁଡ୍ଡୁ ଘୁଡ୍ଡୁ କରି ତା ପେଟତଳେ ଏକଡ଼ ସେକଡ଼ ଘଷି ହୋଇ ତା'ର ଭୁଲ୍ ପାଇଁ ଦୁଃଖ ଜଣାଉଥିଲା ।

ଘରର ମାଲିକ ବିକ୍ରମବାବୁ କୁକୁର ବିଲେଇଙ୍କର ଏଇ ସ୍ନେହ, ଆଦର ଦେଖି ମାମାକୁ ବୁଝେଇ ଦେଲେ, "ବୁଝିଲୁ ମାମା, ଜାତିଆଣ ମନୋଭାବ - ଆମକୁ ସତରେ ଜଣକଠାରୁ ଜଣକୁ ଦୂରେଇ ଦେଉଛି । ସେଇଥିରୁ ସବୁ କଳି କନ୍ଦଳର ସୃଷ୍ଟି । ପ୍ରକୃତ ଆଦର ଆଉ ସ୍ନେହରେ ହିଁ ଏହାର ପରିବର୍ତ୍ତନ ହେବ । ଦେଖୁନୁ- କୁକୁର ଛୁଆଟା ଯୋଗୁ ବିରାଡ଼ି, କୁକୁରଙ୍କର କାହିଁ କେତେ ଦିନର ଅମେଳ କେମିତି ସହଜରେ ତୁଟିଗଲା... ତେଣୁ ମଣିଷପିଲାମାନେ ଚାହିଁଲେ, ତା'ଠୁ ଆଉ ଅଧିକ ଭଲକାମ ବି କରିପାରିବେ । "

# ସହେ ଯିଏ ବଡ଼ ସିଏ



ଆଷାଢ଼ ଆକାଶରେ କଳାହାଣ୍ଡିଆ ମେଘଟା ଘୋଟିଥିଲେ ବି ବରଷା ପଡୁ ନଥିଲା କି ବିଜୁଳି, ଘଡଘଡି କିଛି ମାରୁ ନଥିଲା । ଗଛପତ୍ର ସବୁକୁ ଦୋହଲେଇ ଦୋହଲେଇ କନ କନିଆ ପବନଟା ଖାଲି ଏକା ଏକା ତା'ର ଖେଳରେ ମାତିଥିଲା ।

ଏମିତି ଗୋଟାଏ ମଜାଳିଆ ପାଗରେ ପବନର ଖେଳ ଦେଖି ଫୁଲେଇ ବେଙ୍ଗୁଲୀ ନାନୀଟା ଖୁପ୍ ଖୁପ୍ ଡେଇଁ ବାହାରି ଆସିଲା ଅମରି ବଣ ଆଡ଼କୁ । ଝାମ୍ପୁରା ଅମରି ବୁଦା ମୂଳରେ ଲଥ୍ କରି ବସି ପଡ଼ି ଖୁବ୍ ଜୋରରେ ସେ କେଁ, କଟର ରଡ଼ି ଛାଡ଼ିଲା । ହେଲେ ତା ଡାକଶୁଣି ପାଖଆଖରୁ ତା ସାଙ୍ଗମାନେ କେହି ଜଣେ ବି ଧାଇଁ ଆସିଲେନି । ଡିମା ଡିମା ଆଖି ଯୋଡ଼ାକ ବୁଲେଇ ପୁଣି ଥରେ ଚାରିଆଡ଼କୁ ସେ ଚାହିଁଲା । ନା, କେହି କୁଆଡ଼େ ନାହାନ୍ତି । ଏମିତି ନିଛାଟିଆ ଜାଗାଟାରେ ଏକୁଟିଆ କ'ଣ ଆଉ କରିବ ସେ ....? ସାଙ୍ଗ ଗୁଡ଼ାକ ଏଡେ ସହଳ କୁଆଡ଼େ ପଳେଇ ଗଲେ କେଜାଣି... ବେଙ୍ଗୁଲୀର ମନଭିତରଟା ଖାଲି ଆଉଟୁପାଉଟୁ ଲାଗିଲା କେମିତି । ସେଠାଛାଡ଼ି ଚାଲିଯିବା ଆଗରୁ ମେଘୁଆ ଆକାଶଟାକୁ ଟିକେ ଅନେଇ ଦେଲା ସିଏ । ଆଃ...! ଢ଼ହ ଢ଼ହ ତାତି ଢ଼ାଳୁଥିବା ଆକାଶଟା ଆଜି କେଡେ ସୁନ୍ଦର ଦିଶୁଛି ... !! ଝାଞ୍ଜି ପବନ ଆଉ ଟକମକ ତାତିରେ ସେ କ'ଣ କମ୍ ହିନସ୍ତା ହୋଇଥିଲା... ପୋଖରୀ ଗାଡ଼ିଆର ଫଟା ଭୂଇଁକୁ ଦେଖି ସେ ଆଉ ତା'ର ସାଙ୍ଗମାନେ ଢ଼େର୍ ଛଟପଟ ହୋଇଛନ୍ତି । ସନ୍ତସନ୍ତିଆ ଅନ୍ଧାରୁଆ ବଣବୁଦା ଭିତରେ କେତେଦିନ ବା ସେମାନେ ଆଉଲୁଚି ରହିଥା'ନ୍ତେ .... ଯା'ହେଉ, ପହିଲି ଆଷାଢ଼ର ବରଷାରେ ପୋଖରୀ ଗାଡ଼ିଆରେ ଏବେ ଟଳେ ଟଳେ ପାଣି ହେଇଗଲାଣି । ତା' ସାଙ୍ଗମାନେ ତାହେଲେ, ସେଇ ଗୋଳିଆ ପାଣିରେ ମନ ଖୁସିରେ ଡିଆଁ ମାରିବାକୁ ବାହାରି ଗଲେଣି ନିଶ୍ଚୟ । ଏଠି ତାଙ୍କୁ ଯେତେ ଖୋଜିଲେ ସିଏ ଆଉ ପାଇବ କୁଆଡୁ....ଏବେ ତ-ଖୁସି ଆନନ୍ଦରେ ମନ ତାଙ୍କର ଫାଟି ପଡୁଥିବ ।

ସମସ୍ତଙ୍କ ଖୁସିର କଥା ଭାବୁ ଭାବୁ ବେଙ୍ଗୁଲୀର ମନ ଭିତରଟା ପୂରି ଉଠୁଥିଲା ଆନନ୍ଦରେ । ବେକ ମୂଳକୁ ଫୁଲେଇ କଟର କଟର କରି ଗୀତ ଦୁଇପଦ ଗାଇ ପକେଇଲା ସେ । ଏଥର କିନ୍ତୁ ତା ପାଟି ଶୁଣି ତରକା ଝିଣ୍ଟିକାଟାଏ କେଉଁଠି ଥିଲା କେଜାଣି ଚର୍‌କରି ଡେଇଁ ପଡିଲା ପୋକଖିଆ ଆମରିପତ୍ର ଉପରୁ । ଅତରଛରେ ଆଖି ପିଛୁଳାକେ ଉଡିଗଲା ସେ ସାଗୁଆ ଘାସ ପଡିଆ ଭିତରକୁ । ଆଖି ଆଗରେ ଡଉଲ ଡାଉଲ କଳା ଝିଣ୍ଟିକାକୁ ଦେଖି ସକାଳ ପହରୁ କିଛି ଖାଇ ନଥିବା ବେଙ୍ଗୁଲୀର ପେଟଟା ଭୋକରେ କଅଁ କଅଁ କରି ପକେଇଲା । ସକାଳୁ ସକାଳୁ ତାକୁ ମନଲାଖି ବଢ଼ିଆ ଆହାରଟାଏ ମିଳିଥିଲା ଏକା । ହେଲେ ଟିକିଏ ଅସାବଧାନତାରୁ ଝିଣ୍ଟିକାଟା ଏବେ ଖସିଗଲା ସିନା...

ନିଜ ଉପରେ ଭାରି ରାଗ ହେଲା ବେଙ୍ଗୁଲୀର । ଟିକିଏ ଯଦି ପତ୍ର ଆଡ଼େ ବୁଲିପଡ଼ି ଅନେଇ ଥା'ନ୍ତା, ଝିଣ୍ଟିକାଟା କ'ଣ ଖସି ପଳେଇ ଯାଇଥା'ନ୍ତା..... ସକାଳଟାରୁ ଏ ପ୍ରଥମ ଶିକାରକୁ ହାତରୁ ଛାଡ଼ିଦେବାଟା ଜମା ଠିକ୍ ହେଲାନି ତା'ର । ସେ ଭାବିଲା- ପଡିଆ ଭିତରେ ଗୋଡେଇ ଗୋଡେଇ ଯେମିତିହେଉ ଝିଣ୍ଟିକାଟାକୁ ଧରି ପକେଇଲେ ହୁଅନ୍ତା... ।

ଆଉ କୁଆଡ଼କୁ ନଚାହିଁ ଏକାଦମ୍‌ରେ ଡେଇଁ ଡେଇଁ ପଡିଆ ଆଡକୁ ବାହାରି ଆସିଲା ବେଙ୍ଗୁଲୀ । କିନ୍ତୁ ଝିଣ୍ଟିକା ପାଖରେ ପହଞ୍ଚୁ ନ ପହଞ୍ଚୁଣୁ ସେଇଟା ଚକ୍‌କର କାଟି ଉଡିଗଲା କନାଶିରୀ ବଣ ଭିତରକୁ । କନାଶିରୀ ବଣଆଡକୁ ଖପର ଖପର ଡେଇଁ ମାଡି ଆସୁଥିବା ବେଙ୍ଗୁଲୀକୁ ଦେଖି ଭାରି ଚିଡିଗଲା ଝିଣ୍ଟିକା । କେଡେ ଚୁପ୍ ସଇତାନ୍ ଏଇଟା....ଖାଇବ ବୋଲି କେମିତି ହାଇଁପାଇଁ ହେଇ ପଛରେ ଗୋଡେଇଛି...।

କଣ୍ଟା ଶିଝୁର ଉପର ଡାଳକୁ ଉଡି ଯାଉ ଯାଉ ଝିଣ୍ଟିକା ଭାବିଲା-ଏଇଥରକ ଜବତ ହୋଇଗଲା । କେମିତି ଆଉ ଖାଇବ..? ସକାଳଟାରୁ ଗୋଡ଼େଇ ଗୋଡ଼େଇ ନାକେଦମ୍ କରିଦେଲାଣି ।

ପଡିଆ ସାରା ଧାଇଁ ଧାଇଁ ହାଲିଆ ହୋଇ ପଡିଥିବା ବେଙ୍ଗୁଲୀ ଚୁପ୍ କରି ଯାଇ ବସିଗଲା କଣ୍ଟାଶିଝୁ ଗଛ ମୂଳରେ । ଆଜି ସକାଳୁ କେମିତି ତା'ର ରାତି ପାହିଥିଲା କେଜାଣି- ଛାର ଝିଣ୍ଟିକାଟା ତାକୁ ଭୁଟେଇଦେଲା.. ।



ଡ଼ିମା ଡ଼ିମା ଆଖିରେ ଉପର ପତ୍ରରେ ବସିଥିବା ଝିଣ୍ଟିକା ଆଡ଼େ ଚାହିଁ ସେ ସଁ ସଁ ନିଶ୍ୱାସ ମାରିଲା । ଛାଡ... ଝିଣ୍ଟିକାଟାର ଭାଗ୍ୟ ଆଜି ଭଲ ।

ତୁଚ୍ଛାଟାରେ ପଡିଥିବା ସାରା ସେଠୁ ଏଠିକି, ଏଠୁ ସେଠିକି ଧାଇଁ ଧାଇଁ ଗୋଡ଼ ଗୁଡ଼ାକ ବି ଝାଇଁ ମାରି ଯାଉଥିଲା ବେଙ୍ଗୁଲୀର । ଭୋକିଲା ପେଟରେ ବିକଳ ହୋଇ ଏଣେ ତେଣେ ଚାହୁଁ ଚାହୁଁ ଗଜାତାଳ ଗଛ ମୂଳରେ ମନ୍ଦାଏ ଜନ୍ଦାଙ୍କ ଉପରେ ଆଖି ତା'ର ଅଟକିଗଲା । ଗୋଟା ଗୋଟା ଅଣ୍ଡା ଧରି ଜନ୍ଦାଗୁଡାକ ଧାଡିବାନ୍ଧି ଏପଟ ସେପଟ ଧାଉଁଥିଲେ ଖାଲି । ସେମାନଙ୍କୁ ଦେଖି ବେଙ୍ଗୁଲୀର ଝୋଲାମରା ହାଲିଆ ଦେହଟାକୁ ସତେ ଯେମିତି ଗଦାଏ ବଳ ପଶି ଆସିଲା । ସେ ଭାବିଲା – ଝିଣ୍ଟିକାଟା ଖସିଗଲେ କ'ଣ ହେଲା..ଏବେ ତା'ର ଖାଦ୍ୟ କୋଉ ଅଭାବ କି... ?

ଅଠାଳିଆ ଜିଭଟାକୁ ଥରକୁ ଥର ଭିତର ବାହାର କରୁଥିବା ବେଳେ ପାଟିରୁ ତାର ଗଳିପଡିଲା ଠପ୍ ଠପ୍ ଲାଳ କେଇ ଟୋପା । ଭାରି ଖୁସି ଲାଗୁଥିଲା ତାକୁ– ଯା ହେଉ, ଆହାର ପାଇଁ ଆଉ ତାକୁ ଏଣେ ତେଣେ ବୁଲିବାକୁ ପଡିବ ନାହିଁ । ଏକା ବେଳକେ ପେଟପୂରା ଭୋଜନ ମିଳିଯିବ ।

ପଛଗୋଡ଼ ଦୁଇଟାକୁ ଟିକେ ଛାଟିଦେଇ ସେ ଖାପ୍‌କରି ଡେଇଁ ପଡିଲା ଜନ୍ଦାମାନଙ୍କ ପାଖକୁ । ଟିକିଏ କଡ଼କୁ ବସି ସବୁଠୁ ସାନ ଦିଶୁଥିବା ଜନ୍ଦା ଛୁଆଟାକୁ ଜିଭରେ ଉଠେଇ ଆଣିଲା ବେଳକୁ କୌଶଳରେ ଖସିଗଲା ସେଇଟା । ଖାଇବା ଲୋଭରେ ବେଙ୍ଗୁଲୀ ତା ପାଖକୁ ମାଡିଗଲା ସିନା, ହେଲେ ତାକୁ ଧରିପାରୁଛି କେଉଁଠି....

ତା ପାଖରୁ ମୁକୁଳି ଯାଇ ଜନ୍ଦା ଛୁଆଟା ଡଗ ଡ଼ଗ ହୋଇ ଗଳିଗଲା ମନ୍ଦାଭିତରକୁ । ମୁହଁକୁ ମୁହଁ ଯୋଡ଼ି ଅନ୍ୟ ମାନଙ୍କୁ କ'ଣ ସବୁ କହିଦେଲା କେଜାଣି, ଢ଼େର୍ ଗୁଡାଏ ଜନ୍ଦା ଲଢୁଆ ସୈନିକ ଭଳି ଜଣ ଜଣ ହୋଇ ଆଗକୁ ମାଡି ଆସିଲେ ।

ପାଖକୁ ମାଡ଼ି ଆସୁଥିବା ଜନ୍ଦା ମାନଙ୍କର ବୋକମୀ ଦେଖି ହସ ଲାଗିଲା ବେଙ୍ଗୁଲୀକୁ । ଅଣ୍ଡା ସଳଖି ସାବଧାନ ହୋଇ

ବସିପଡିଲା ସିଏ । ଆଗକୁ ଝୁଙ୍କି ଯାଇ ଅଠାଳିଆ ଲମ୍ବାଜିଭଟାରେ ଗୋଟାକୁ ଗୋଟା ଜନ୍ଦା ପାଟି ଭିତରକୁ ଟାଣି ଆଣୁ ଆଣୁ ଭାବିଲା- ଆଃ, ଭୋକରେ ପେଟଟା ଜଳିଲା ବେଳକୁ ବଢ଼ିଆ ଭୋଜିଟାଏ ମିଳିଗଲା ... ।

ହେଲେ ଇଏ କ'ଣ ...! ଖାଇବାରେ ମାତିଥିଲାବେଳେ ମନ୍ଦାକ ଯାକ ଜନ୍ଦା ତାକୁ ବେଢ଼ିଗଲେଣି ଯେ..!! କ'ଣ କରିବ ସେ...? ଚାରି ପଟକୁ ଚାହିଁ ଖସିଯିବାର ବାଟ ଖୋଜୁଥିଲେ ବି ବାଟ ଆଉ କାହିଁ ...? ଡିଆଁ ମାରି ପଳେଇବା ଆଗରୁ ପଞ୍ଚାଏ ଜନ୍ଦା ବେଙ୍ଗୁଲୀର ପେଟ, ପିଠି ଚାରିଆଡ଼େ ବେଢ଼ିଗଲେ । ସେମାନଙ୍କ କାମୁଡ଼ାରେ ଛଟପଟ ହୋଇ ଉଠିଲା ବେଙ୍ଗୁଲୀର ନରମ ଦେହ । ବିକଳ ହୋଇ ଭୂଇଁ ଉପରେ ଗଡ଼ିଗଲେବି ଗୋଟାଏ ଜନ୍ଦା ଦେହରୁ ଛାଡୁ ନଥିଲା । ତା ସାଙ୍ଗକୁ ଆଉ ପୁଳାଏ ଜନ୍ଦା ମାଡି ଆସି ମୁହଁ ପାଟି ସବୁ ଆଡ଼େ ଭିଣି ପକେଇଲେ । ଏଥର ଜୀବନଟା ଛାଡ଼ିଗଲା ଭଳି ଲାଗିଲା ବେଙ୍ଗୁଲୀକୁ । ମାଟି ଉପରେ ଗଡ଼ିଗଡ଼ି ଧୂଳି ସର ସର ହୋଇଗଲା ତା'ର ଦେହ । ଧୂଳି ଲଟପଟ ଦେହରେ ଫାକୁରୁ ଫାକୁରୁ ଡେଇଁ ବିକଳରେ ସେ ଖାଲି ରଡ଼ି ଛାଡିଲା

ପାଖ କଣ୍ଟାବୁଦା କଡ଼ରେ ଲଟା ପତ୍ର ଭିଡ଼ି ଖାଉଥିବା ମେଣ୍ଢାଛୁଆଟା ବେଙ୍ଗୁଲୀକୁ ଦେଖି ଆବାକାବା ହୋଇଗଲା । କ'ଣ ହେଲା ଯେ ଏମିତି ବିକଳରେ ଛଟପଟ ହେଉଛି ଏଇଟା... ।

ଛାନିଆରେ କାନ ଯୋଡ଼ାକ ଠିଆ ହୋଇଗଲା ମେଣ୍ଢାଛୁଆର । କନ କନ ହୋଇ ଏଣେ ତେଣେ ଅନେଇଲା ସିଏ । କାହିଁ.... କେହି କୁଆଡ଼େ ନାହିଁତ ... ତାହେଲେ, ଇଏ ଏମିତି କାନ ଅତରା ରଡ଼ି ପକଉଛି କାହିଁକି ....? ଭାରି ଛାନିଆ ଲାଗିଲା ମେଣ୍ଢାଛୁଆକୁ । ତଥାପି ନସର ପସର ହେଇ ଧାଇଁ ଯାଇ ଭେଁ ଭେଁ ରଡିକରି ଘାଗଡ଼ା କଣ୍ଠରେ ପଚାରିଲା -କ'ଣ ହେଲାରେ....? ଏମିତି ବୋବାଳି ଛାଡୁଛୁ କାହିଁକି ...?

ଜନ୍ଦା କାମୁଡ଼ାରେ ଦେହଟା ବିନ୍ଧି ଉଠୁଥିଲେ ବି ମେଣ୍ଢା କଥା ଶୁଣି ରାଗରେ ବେଙ୍ଗୁଲୀର ଦେହଟା ଆହୁରି ଜଳିଗଲା । ହାଣ୍ଡି ଆ ମୁଣ୍ଡା ମେଣ୍ଢା.... କେମିତି ଖତେଇ ହେଉଛି ଦେଖ– ଢ଼ିମା ଢ଼ମା ଆଖିଦେଖେଇ ଚ଼ମକି ଆସି କହିଲା– ହଇରେ, କଲ ବଲ ଦେଖି ମତେ ଥଟ୍ଟା କରୁଛୁ...? ଛି ,ଛି ଲୋମ ସାଲୁ ବାଲୁ ଦେହଟା ତୋର କି ଅସନା... ସେଥିରେ ପୁଣି ମୋ କଣ୍ଠଟା ଟିକେ ଘଡ ଘଡିଆ ମୋଟା ବୋଲି ଛଳେଇ କରି ଖତେଇ ହେଉଛୁ କ'ଣ ...? ଜନ୍ଦାଙ୍କ ପାଖରୁ ଖସିଲେ ତୋ କଥା ବୁଝୁଛି ରହ ...

ବେଙ୍ଗୁଲୀର କଥା ଶୁଣି ମେଣ୍ଢାଛୁଆକୁ ଆହୁରି ଆବାକାବା ଲାଗିଲା । ସିଏ ତାକୁ ଥଟ୍ଟା କଲା ପୁଣି କେତେବେଳେ ...? ଜନ୍ଦାଙ୍କ ପାଖରୁ ଖସିଲେ ସିଏ ତା'ର କ'ଣଟାଏ ବା କରିପକେଇବ... ହସ ମାଡିଲା ମେଣ୍ଢାଛୁଆକୁ – ରାଗିଗଲେ ସବୁଜୀବ ଜନ୍ତୁ ଆଉ ମଣିଷ ଗୁଡ଼ାକ ଏଇମିତି । ତାଙ୍କ ଠାରୁ ବଳୁଆ ପ୍ରାଣୀର ବି ମଜା ଛଡ଼େଇ ଦେବେ ବୋଲି ଫୁଟାଣି ମାରନ୍ତି ।

ବେଙ୍ଗୁଲୀର ଆଉଟିକିଏ ପାଖକୁ ଘୁଞ୍ଚିଆସି ଅନେଇଲା ମେଣ୍ଢାଛୁଆ । ଜନ୍ଦା ଗୁଡାକ ଦେହ ସାରା କାମୁଡ଼ି ଧରିଛନ୍ତି । ଛଟର ପଟର ହୋଇ ଯେତେ ଡ଼େଇଁଲେ ବି ଗୋଟାଏ ଖସୁ ନାହାଁନ୍ତି ଦେହରୁ ।

ଡହଳ ବିକଳ ବେଙ୍ଗୁଲୀକୁ ଦେଖି ମେଣ୍ଢାଛୁଆ ଭାବିଲା , ଏଇଟା ଏଡ଼େ ଅବୁଝା ...! ଏତେ ହିନସ୍ତା ହେଉଛି । ସେଥିରେ ମୋ ଆଡକୁ ଚ଼ମକି ଆସୁଛି କେମିତି..! ବେଙ୍ଗର କଣ୍ଠଭଳି ମେଣ୍ଢାମାନଙ୍କର କଣ୍ଠ ବି ତ ମୋଟା, ଘାଗଡ଼ା... ହେଲେ ଏ କଥା କ'ଣ ସିଏ ଜାଣିନି...? ତେବେ ଏମିତି ଦୁଃଖ ବିପଦରେ ପଡିଥିଲା ବେଳେ କେହି କ'ଣ କାହାକୁ ଖତେଇ ହୁଏ....?

ବେଙ୍ଗୁଲୀର ଟାଇଁ ଟାଇଁଆ କଡ଼ା କଥା ଗୁଡାକ ଭାରି ବାଧିଲା ମେଣ୍ଢାଛୁଆଁକୁ । ହେଲେ ଏତେ କଷ୍ଟରେ ଛଟପଟ ହେଉଥିଲା ବେଳେ ତାକୁ ଛାଡ଼ି ଦେଇ ଆସିବାକୁ ଜମା ଇଚ୍ଛା ହେଲାନି ତା'ର । ଆହୁରି ଗୁଡ଼ାଏ ଜନ୍ଦା ମାଡ଼ି ଆସୁଥିବାର ଦେଖି ମନେ ମନେ ଭାବିଲା- ଆହା... ଜନ୍ତୁଟା କେଡେ କଲ ବଲ ହେଉଛି... ନ ବୁଝି ନଶୁଝି ଦି'ପଦ ଗାଳି ଦେଲା ବୋଲି ମୁଁ କ'ଣ ସତରେ ତାକୁ ଛାଡ଼ି ଚାଲିଯିବି..? ଛୋଟିଆ ଜନ୍ତୁଟାଏ ସେ । କେତେବା ତା'ର ବୁଦ୍ଧି... ବିପଦବେଳେ, ଏମିତି ହଇରାଣ ହରକତରେ ତାକୁ ଛାଡ଼ି-ଦେଇଗଲେ, ମୁଁ ତ ତା ସାଙ୍ଗେ ସମାନ ହୋଇଯିବି । ତା'ଠୁଁ ବଡ଼ ଜୀବଟାଏ ବୋଲି ମୋର ଆଉ ମହତ ପଣିଆ ରହିବ କେଉଁଠି ...? ଯେମିତି ହେଉ ଜନ୍ଦାଙ୍କ ଠାରୁ ବେଙ୍ଗୁଲୀଟାକୁ ମୁକାଳିବାକୁ ହେବ ।

ଏଇଆ ଭାବି ବୁଦା ଉପରେ ମାଡି ଯାଇଥିବା ଲଟା ପତରରୁ ଫୁଲାଏ ଜୋର କରି ସେ ପାଟିରେ ଝିକିଂଆଣିଲା । ଛଟପଟ ହୋଇ ଭୂଇଁରେ ଗୁଡୁଥିବା ବେଙ୍ଗୁଲୀ ଦେହରୁ ଧୂଳିଆ ଜନ୍ଦା ଗୁଡ଼ାଙ୍କୁ ସେଇ ଲଟା ପତ୍ରରେ ଯେତେ ଝାଡିଲେ ବି ସହଜେ ଛାଡୁନଥା'ନ୍ତି ସେ ଗୁଡ଼ାକ । ତଥାପି ଝାଡି ଝୁଡି ଗୁଡ଼ାଏ ଝଡେଇ-ପକେଇଲା ସେ ।

ଜନ୍ଦା ପଲରୁ ଖସି ଆସିବାକୁ ପଛ ଗୋଡରେ ଖେପା ମାରି ଟିକିଏ ଆଗକୁ ଡ଼େଇଁ ପଡିଲା ବେଙ୍ଗୁଲୀ । ତା ବିକଳ ସହି ନପାରି ମେଣ୍ଢାଛୁଆ ବି ଧାଇଁଗଲା ତା ପାଖକୁ । ଆହା.. ଜନ୍ଦା କାମୁଡ଼ାରେ ଦେହଟା ଗୋଟାସାରା ଫୁଲି ଯାଇଛି । ପିଠି ଆଉ ଗୋଡ଼ କନ୍ଧିରେ ତେବେ ବି କାମୁଡ଼ି ଧରିଥିବା ଜନ୍ଦା କେଇଟାଙ୍କୁ ମେଣ୍ଢାଛୁଆ ତା ଖୁରାରେ ଘଷି ଘଷି ଛଡେଇ ଦେଲା ।

ଖସି ପଡିଥିବା ଜନ୍ଦା ଙ୍କ ଭିତରୁ ଛୋଟ ଜନ୍ଦାଟାଏ ରାଗିକରି ମେଣ୍ଢାଛୁଆକୁ କହିଲା-ତୁମକୁ ଏତେ ଭଲଲୋକୀ କରିବାକୁ କହୁଛି କିଏ...? ଉପକାରୀ ଦେଖେଇ ହେଉଛତ.. ହେଲେ ଯେତେବେଳେ ଏ ବେଙ୍ଗୁଲୀ ଆମ ଭିତରୁ ଗୋଟା ଗୋଟା ଗିଳି ପକଉଥିଲା, ସେତେବେଳେ କୁଆଡେ ଥିଲ... ? ଏଇଟା ଭାବି ଥିଲା, ଏକୁଟିଆ ଦେଖି ଗୋଟା ଗୋଟା କରି ଖାଇଯିବ । ହେଲେ ପାଇଛି ପାନେ। ଆମେ ମେଳି ବାନ୍ଧି ଆସିଯିବାରୁ ବିଚ଼ରା-ଅକଲ ଗୁଡୁମ୍ ହୋଇଗଲା ।

ଛୋଟ ଜନ୍ଦାର କଥା ଶୁଣି କଣ୍ଟା ଶିଝୁ ଗଛର ଉପର ପତ୍ରରେ ବସି ମଜା ଦେଖୁଥିବା ଝିଣ୍ଟିକାଟା କହିଲା -ସତକଥା କହିଲ ଏକା, ଏକୁଟିଆକୁ ସିନା ମୁହଁ ଫୁଟୀଣି, ହେଲେ ମେଳିକି ଆଉ ବଳ କ'ଣ..? ଦେଖୁନ -ମତେ କୋହଳ ଦେଖି ସକାଳ ପହରୁ ମୋ ପଛରେ ଗୋଡେଇ ଗୋଡେଇ କେମିତି ନୟାନ୍ତ କରିଦେଲା ....?

ଝିଣ୍ଟିକା କଥା ଶୁଣି ଛୋଟ ଜନ୍ଦା ଆଉଟିକିଏ ମେଣ୍ଢାପାଖକୁ ଲାଗି ଆସି କହିଲା- ବୁଝିଲ, ବରଷା ଅସରାରେ ଆମ ଗାତରେ ପାଣି ପଶିଗଲା ବୋଲି ବିକଳ ହୋଇ ଛୁଆ ପିଲା ଅଣ୍ଡାଗୁଡ଼ାକୁ ଧରି ଆମେ ଉଚ୍ଚ ଜାଗାକୁ ଯିବାକୁ ବାହାରିଥିଲୁ। ସେତିକି ବେଳକୁ ଇଏ ଆମକୁ ସାହାଯ୍ୟ କରିବ କ'ଣ.. ଓଲଟି ଆମ ହଇରାଣରୁ ଫାଇଦା ଉଠଉଛି। ତା' ପେଟ ଏମିତି ପୋଡି ଯାଉଛି ଯେ ଆମ ବିପଦ ବେଳେ ଗୋଟାକୁ ଗୋଟା ଧରି ଗିଳି ପକଉଛି ଆମକୁ। ପେଟ ଜଳୁଛି ବୋଲି-କ'ଣ ଭଲ ମନ୍ଦ, ଦୟା-ମାୟା କିଛି ଟିକିଏ ରହିବ ନାହିଁ ....?

ଜନ୍ଦା ଗୁଡାଙ୍କୁ ବୁଝେଇବାକୁ ଯାଇ ମେଣ୍ଢା କହିଲା-ଯାହାତ ହେଲାଣି ହେଲାଣି । ଏଥର ତାକୁ ଛାଡିଦିଅ, ବିଚରା ଭାରି କଷ୍ଟ ପାଇଲାଣି।

ଆହୁରି ଟିକେ ସାନ ଦିଶୁଥିବା ଜନ୍ଦାଛୁଆଟେ ତରତର ହୋଇ ପାଖକୁ ମାଡ଼ି ଆସି କହିଲା -କଷ୍ଟ ପାଇଲାଣି କେଉଁଠି... ତମେ ଚାଲି ଆସିଲ ବୋଲି, ନହେଲେ, ଅନ୍ୟର ବିପଦରୁ ମଜା ମାରିଲେ କେମିତି ଫଳ, ଆଜି ତାକୁ ବୁଝେଇ ଦେଇଥା'ନ୍ତୁ। ଏଇ ଦେଖୁନ-ତୁମେ ତାକୁ ଝାଡ଼ି, ଝୁଡ଼ି ଦେଇ ସାହାଯ୍ୟ କରିବାକୁ ଆସିଲା ବେଳକୁ ସିଏ ତମକୁ କେମିତି ଗାଳିଦେଲା ...ସେଇଟା ଭାରି ଦୁଷ୍ଟ ।

ବୁଝିଗଲାପରି ମୁଣ୍ଡଟାକୁ ତଳକୁ ଉପର ଦୁଇଥର ହଲେଇ ଦେଇ ମେଣ୍ଢା କହିଲା-ଆରେ, ସେ କ'ଣ ଜାଣି ଜାଣି ମତେ ଗାଳିଦେଲା...? ତା' ଘାଗଡ଼ା କଣ୍ଠ ଶୁଣି ତା ବିପଦ ବେଳେ ମୁଁ ତାକୁ ଖତେଇ ହେଉଛି ବୋଲି ସେ ଭାବିଲା । ହେଲେ, ତା ଭଳି ମୋ କଣ୍ଠଟା ଯେ ମୋଟା, ଘାଗଡା-ଏକଥା ଜାଣିଥିଲେ, ସେ କ'ଣ ରାଗିଥା'ନ୍ତା...? ନବୁଝି ନଶୁଝି ଗାଳିଦେଇଛି ବୋଲି ମୁଁ ତାକୁ ଛାଡ଼ି ଚାଲିଯାଇଥିଲେ, ସେ ତ ତୁମ ପାଖରେ ଆଜି ଆଉ ବଞ୍ଚିନଥା'ନ୍ତା ।

ଜନ୍ଦା କାମୁଡ଼ା ଯୋଗୁ ଶିରି ଶିରି ହେଉଥିବା ଗୋଡ଼ ଆଉ ଦେହକୁ ବିକଳରେ ବାଲିରେ ଘଷୁଥିବା ବେଙ୍ଗୁଲୀ ଭାବିଲା -ସତ କଥାତ...। ଏ ମେଣ୍ଢା କେତେ ଭଲ.. ଟାପରା କରୁଛି ବୋଲି ମିଛଟାରେ ଆଜି ସିନା ତାକୁ ଏତେ ଗାଳି ଦେଲି.. ।

ଲାଜରେ ତଳକୁ ନଇଁ ଆସୁଥିବା ବେଙ୍ଗୁଲୀର ଡିମା ଡିମା ଆଖି ଯୋଡ଼ାକରୁ ଲୁହ ଦୁଇ ଟୋପା ଗଡ଼ିଆସିଲା

ବେଙ୍ଗୁଲୀ ଆଖିରେ ଲୁହ ଦେଖି ମେଣ୍ଢାଛୁଆ କହିଲା, ''କାନ୍ଦୁଛୁ କାହିଁକି ...? ତୁ ଏକା ନୁହଁ। ଆଜିକାଲି ତୋ ଭଳି ଅନେକ ବି ଠିକ୍ କଥା ନବୁଝି ନଶୁଝି ତୁଚ୍ଛାଟାରେ ହୋହଲ୍ଲାରେ ମାତିଛନ୍ତି । ସତକଥା ବୁଝିବାକୁ ତାଙ୍କର ବେଳ ନାହିଁ କି ମନବି ନାହିଁ।''

ସେତେ ବେଳକୁ ମେଳିବାନ୍ଧି ଜମା ହୋଇଯାଇଥିବା ଜନ୍ଦାଙ୍କ ଭିତରୁ ବୁଢ଼ା ଜନ୍ଦାଟାଏ ବାହାରି ପଡ଼ି କହିଲା–ଏତେ ଦିନ ଯାଏ ମେଣ୍ଢା ମାନଙ୍କୁ ଆମେ ନିରୀହ ଆଉ ମୋଟା ବୁଦ୍ଧିଆ ବୋଲି ଭାବି ଆସିଛୁ । କିନ୍ତୁ ଏ ମେଣ୍ଢାଛୁଆ କେତେ ସତକଥା କହିଲା...। ମିଛଟାରେ ରାଗିକରି ଆମେ ଅନେକ ବେଳେ ଭୁଲ୍ କରୁଛୁ । ଦେଖିଲତ.. ମେଣ୍ଢାଛୁଆକୁ ,ବେଙ୍ଗୁଲୀ ଏତେକଥା କହି ଗାଳି ଦେଲା.. ତଥାପି ସେ କ'ଣ ରାଗିଲା ...? ତେଣୁ ସହିଯିବାଟା ଗୋଟାଏ ଭାରି ଭଲ ଗୁଣ । ସେଥିରେ ଶତ୍ରୁବି ସାଂଗ ପାଲଟିଯାଏ ।

ଆଉ ଟିକିଏ ଉପରକୁ ମୁଣ୍ଡ ଉଠେଇ ଟିକି ଜନ୍ଦାଟା କହିଲା– କ'ଣ କହିଲ...? ଏମାନେ ଆମକୁ ଖାଇଯିବେ, ଆଉ ରାଗ ହେବନି କେମିତି ...?



ବୁଢ଼ା ଜନ୍ଦା ଆଖି ମିଟି ମିଟି କରି କହିଲା–ଏମାନେ ତ ଖାଇବାକୁ ଆସିବେ । ତେବେ ଆମକୁ ସତର୍କ ହୋଇ ଏମାନଙ୍କଠାରୁ ନିଜକୁ ରକ୍ଷା କରିବାକୁ ପଡିବ । ଆତ୍ମରକ୍ଷା ପାଇଁ କାମୁଡ଼ି କାମୁଡ଼ି ଘଉଡ଼େଇ ଦେଲେତ ଛାଆଁ ପଳେଇବେ, ମାରିବାଯାଏ କଥା ଯିବ କାହିଁକି...?

ବୁଢ଼ାଜନ୍ଦା କଥାରେ ମୁଣ୍ଡ ଟୁଙ୍ଗାରି ମେଳା ମେଳା ଜନ୍ଦାଗୁଡାକ ଧାଡ଼ିବାନ୍ଧି ଗଜାତାଳ ଗଛ ମୂଳକୁ ଆଗେଇଗଲେ । ଲାଜରେ ତଳକୁ ମୁହଁପୋତି ବସିଥିବା ବେଙ୍ଗୁଲୀ ଦେହରେ ଶରଧାରେ ମୁହଁଟାକୁ ଘଷିଦେଇ ମେଣ୍ଢାଛୁଆ ବିଖପ୍ ଖପ୍ ଡେଇଁ ବୁଦା ଉହାଡକୁ ଚ଼ରିବା ପାଇଁ ଚ଼ାଲିଗଲା ।

■

# ଯେମିତି କାମ ସେମିତି ଫଳ



ଅଶିଣ  ସକାଳର ସୁନା ସୋରିଷିଆ ଖରାକୁ ଚାହିଁ ଫିକ୍ ଫିକ୍ ହସୁ ହସୁ ଧଳା କନିଅର ଫୁଲଟା ଗୁଣୁଗୁଣୁ ଗୀତ ଗାଇ ମହୁ ପିଉଥିବା ମହୁମାଛି କୁ କହିଲା- ''ଆଜି କ'ଣ ତ ଭାରି ଖୁସି ...?''

ଗୀତ ବନ୍ଦ କରି ମହୁମାଛି କହିଲା-ସବୁଦିନେ ତ ମୁଁ ଖୁସି । କୋଉଦିନ ମୋତେ ଦୁଃଖ କରିବାର ଦେଖିଛୁ ?

ଫୁଲ କିଛି କହିବା ଆଗରୁ ମହୁମାଛିଟି ଉଡ଼ିଯାଇ କିଛି ଦୂରରେ ଫୁଟିଥିବା ଅରଖ ଫୁଲରେ ବସି ପଡ଼ିଲା । ଟଗର, ମନ୍ଦାର, କନିଅର ଫୁଲରେ ବାଡ଼ି ପଛଟା ହସି ଉଠୁଥାଏ । ମନ ଖୁସିରେ ଗୁଣୁ ଗୁଣୁ ଗୀତ ଗାଇ ଫୁଲରୁ ଫୁଲକୁ ଉଡୁ ଉଡୁ ହଠାତ୍ ପଛରୁ କାହାର ଡ଼ାକ ଶୁଣି ସେ ବୁଲି ଚାହିଁଲା । ଦେଖିଲା-ଅରଖ ବୁଦାର ଟିକିଏ ଦୂରରେ ଶୁଖିଲା ଅରଖ ପତ୍ର ଉପରେ ବସି ମଶାଟିଏ ଶୁଣ୍ଢ ହଲାଇ ହଲାଇ ତାକୁ ଡ଼ାକୁଛି । ସେ ମନରେ କିଛି ନ ଭାବି, ମଶା ପାଖରେ ପହଞ୍ଚି ଯାଇ ପଚାରିଲା -" କ'ଣ କିଛି କାମ ଥିଲା..?"



ଶୁଣ୍ଢଟାକୁ ଉପରକୁ ଟେକି ମଶା କହିଲା-

"ଓଃ...ସକାଳ ପହରୁ ଗୁଣୁଗୁଣୁ କରି କାନ ଫଟେଇ ଦେଲୁଣି । କ'ଣ ଗୁଣୁଗୁଣୁ ବନ୍ଦ କରିବୁ ନା ନାହିଁ ? "

ମହୁମାଛି କହିଲା-"ତୋର ରାଗ ହେଉଛି କାହିଁକି ? ମୋ ଗୀତରେ ଫୁଲ ଖୁସି, ପବନ ଖୁସି-ସମସ୍ତେ ଖୁସି । ହେଲେ ତୋ'ରଡ଼ିରେ ...?"

ମଶା ରାଗି ଯାଇ ଟିକିଏ ଉପରକୁ ଉଡ଼ିଆସି କହିଲା- ''କ'ଣ କହିଲୁ ? ମୋ' ରଡ଼ିରେ ..? ତୁ ଜାଣିନୁ- ଆମେ ମଶାମାନେ ଯେତେବେଳେ ସଞ୍ଜ ପହରେ ଏକାଠି ହେଉ-ଆମ ଗଣଗଣ ସ୍ୱରରେ ଚରିଆଡ଼ କମ୍ପିଉଠେ। ଆମେ ମଶାମାନେ ହେଲୁ ବୁଦ୍ଧିଆ ଜୀବ, ତୁମ ପରି ନୁହଁ।''

ଆଖି ତରାଟି ମହୁମାଛି କହିଲା-ଏଁ ..! ବୁଦ୍ଧିଆ .....! କେମିତି ବୁଦ୍ଧିଆ ...?



ଆଉ ଟିକିଏ ପାଖକୁ ଉଡ଼ିଆସି ମଶା କହିଲା -''ଦେଖିନୁ ତୁ କେଡ଼େ ବୋକା। ଏତେ ଟିକେ ମହୁ ପାଇଁ-ସକାଳ ସାରା ପରିଶ୍ରମ କରି ଫୁଲରୁ ଫୁଲକୁ ଉଡ଼ି ବୁଲୁଛୁ। କାହିଁ-ଗୋଟାଏ ଫୁଲରୁ ପେଟପୂରା ମହୁ ଖାଇଲେ କ'ଣ ହୁଅନ୍ତା ନାହିଁ ?''

ମଶା କଥା ଶୁଣି ମୁଣ୍ଡ ହଲାଇ ମହୁମାଛି କହିଲା - ''ହୁଅନ୍ତା ନାହିଁ କାହିଁକି ? ହେଲେ ଗୋଟାଏ ଫୁଲରେ କ'ଣ ଏତେ ମହୁ ଅଛି ଯେ ସେଥିରେ ପେଟ ପୂରିଯିବ ? ତା'ଛଡ଼ା ଆମେ ମହୁମାଛି କେବଳ ତୁମ ମଶାମାନଙ୍କ ପରି ନିଜ ପେଟଟି ପୂରାଇ ଖୁସି ହେଉ ନାହୁଁ। ଆଗକୁ କିଛି ମହୁ ମଧ୍ୟ ସାଇତି ରଖୁ। ସବୁବେଳେ କାମରେ ଲାଗି ରହିବାକୁ ଆମକୁ ଭଲଲାଗେ । '' ଶୁଣ୍ଢଟାକୁ ତଳ ଉପର ଦି'ଥର ଝା'ଡ଼ି ଦେଇ ମଶା କହିଲା-''ସତରେ ତୁମେ ଗୁଡ଼ା ଭାରି ବୋକା । ସବୁବେଳେ ଏମିତି ପରିଶ୍ରମ କରିବାକୁ ଆମକୁ ଜମା ଭଲ ଲାଗେ ନାହିଁ। ସେଥିରେ ଖାଲି ଅଯଥା ସମୟ ନଷ୍ଟ । ତେଣୁ ଆମେ କେମିତି କାମ କରୁଛୁ -ଜାଣିଛୁନା..? ଆ, ଦେଖିବୁ ଆ''

ମଶା କଥାରେ ମହୁମାଛି ତା' ସାଙ୍ଗେ ଉଡ଼ିଉଡି ଗୋଟାଏ ଝାମ୍ପୁରା ଟଗର ଗଛ ମୂଳରେ ଯାଇ ପହଞ୍ଚିଲା । ହାତରେ ଫୁଲ ଚାଙ୍ଗୁଡ଼ିଟିଏ ଧରି ପଧାନ ଘର ଗୋପୀ ଅଜା କ'ଣ ସବୁ ଶ୍ଳୋକ ବୋଲି ବୋଲି ଫୁଲ ତୋଳୁଥା'ନ୍ତି । ପିନ୍ଧିଥିବା ଗେରୁଆ ଗାମୁଛାଟି ତାଙ୍କର ଖାଲି ଆଣ୍ଠୁଯାଏ ଲମ୍ବିଥାଏ । ତା' ତଳକୁ ପାଦ ପର୍ଯ୍ୟନ୍ତ ଗୋଡ଼ଟା ମୁକୁଳା । ଗୋପୀ ଅଜାଙ୍କ ସେଇ ମୁକୁଳା ଗୋଡ଼ ଉପରେ ବସି ତିନି-ଚାରିଟା ମଶା ଖୁସିରେ ରକ୍ତ ପିଉଥା'ନ୍ତି। ତାଙ୍କୁ ଦେଖାଇ ମଶା କହିଲା -''ଦେଖୁଛିତ ...? ମଣିଷ ହେଉ କି ପଶୁ ହେଉ , ଯାହା ଉପରେ ଆମେ ବସୁ- ଶୁଣ୍ଢ ଗଳେଇ ପେଟ ପୂରିବା ଯାଏ ଲହୁ ଶୋଷି ନେଉ । ଦିନେ କାହିଁକି.. ଦୁଇ ତିନିଦିନ ଯାଏ କିଛି ନ ଖାଇଲେ ବି ଚଳେ । କୋଉଠି କିଛି ସାଇତି ରଖିବାରେ ଆମର ଦରକାର ବି ନାହିଁ । ତୁମେ ସବୁ ମହୁ ସଞ୍ଚୁଛ ସିନା, ହେଲେ ଆଉ କିଏ ଖାଇ ଯାଉଛି । ବୋକା ଗୁଡା ...''

ଠିକ୍ ଏତିକିବେଳେ ଠୋ କରି ଗୋଟାଏ ଶବ୍ଦ ଶୁଣି ମଶାଟା ଚମକି ପଡ଼ିଲା । ବକବକ ହୋଇ ଗପିଯାଉଥିବା କଥାଗୁଡ଼ା ତା'ର

ହଠାତ୍ ବନ୍ଦ ହୋଇଗଲା । ବୁଲିପଡ଼ି ଦେଖିଲା–ଗୋପୀ ଅଜା ତାଙ୍କ ହାତରେ ଲାଗିଥିବା ଦୁଇତିନି ଚୌପା ରକ୍ତକୁ ପିନ୍ଧିଥିବା ଗାମୁଛାଟାରେ ପୋଛୁଛନ୍ତି ଆଉ ବିଡ୍ ବିଡ୍ ହୋଇ କ'ଣ ଗୁଡ଼ାଏ ଗାଳି ବି ଦେଉଛନ୍ତି । ମହୁମାଛିର ପାଟିରୁ ବାହାରି ପଡ଼ିଲା– ''ଆହା...ବିଚରା–ସବୁ ଗୁଡ଼ାକ ମରିଗଲେ ନା କ'ଣ...?''

ମଶା ମାନଙ୍କ ଭିତରୁ ଗୋଟାଏ ତଳେ ପଡ଼ି ଛଟପଟ ହେଉଥାଏ । ଡେଣା ଦୁଇଟା ତାର ଭାଙ୍ଗି ଯାଇଥାଏ ଯେ ଦରମେଲା ହୋଇ ଉଠିବି ପାରୁନଥାଏ । ବାକି ଦୁଇଟା ଗୋଡ଼କୁ ଉପରକୁ ଟେକି ତଳେ ପଡ଼ିଥା'ନ୍ତି । ହଲ୍ ନାହିଁ କି ଚ'ଲ୍ ନାହିଁ । ଦେହରେ ଜୀବନ ନଥାଏ ତାଙ୍କର । ମହୁମାଛି ଆଡ଼େ ଟିକେ ଚାହିଁ ମଶା କହିଲା– ''ଛି, ଛି–ଏ ମଣିଷ ଗୁଡ଼ାକ ଏଡ଼େ ନିର୍ଦ୍ଦୟ.. ମଶା କେଇଟା କ'ଣ ଦେହରୁ ସବୁଯାକ ରକ୍ତ ଶୋଷି ନେଉଥିଲେ ? ଠୋ'–କରି ଚଟକଣାଟାଏ ଦେଲା । ''



ମହୁମାଛି କହିଲା– ''ଚଟକଣା ନ ଦେଇ କ'ଣ ଆଉଁସି ଥାଆନ୍ତା...? ଅଳ୍ପ ପରିଶ୍ରମରେ ଅନ୍ୟକୁ କଷ୍ଟ ଦେଇ ବେଶି ପାଇବାର ଲୋଭତ ଚୋରି, ଠକାମି ସଙ୍ଗେ ସମାନ । ତା'ର ଫଳ ଏଇଆ । ଦେଖିଲୁ ତ.. ? ହେଲେ ଆମେ ମହୁମାଛି– ସବୁବେଳେ ପରିଶ୍ରମ କରି ନିଜକୁ ବଞ୍ଚେଇବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କ ପାଇଁ ଆଉ ଆମ ଭବିଷ୍ୟତ ପାଇଁ ସଞ୍ଚୟ କରି ରଖୁଛୁ । ଅନ୍ୟକୁ ଦେବାରେ ଯେଉଁ ଆନନ୍ଦ, କାହାଠାରୁ କିଛି

ଛଡ଼େଇ ନେବାରେ ତାହା ମିଳିବ କୁଆଡୁ..? ପରିଶ୍ରମ ଆଉ ପରୋପକାର ଜୀବନରେ ଖୁସି ଆଣିଦିଏ । ସେଇଥିପାଇଁ ତ ସଭିଏଁ ଜନ୍ମ ନେଇଛନ୍ତି । ହେଲେ ତୁମତେ ଭୁଲ୍ କଥା କହୁଛୁ । ''

ରାଗିଯାଇ ମଶା କହିଲା- ''ହଁ... ଭାରି ଗୁଡ଼ାଏ ଠିକ୍‌କଥା ତୁ ଜାଣିଛୁ...ତୋ ଉପଦେଶ ଗୁଡ଼ାକ ତୋ'ରି ପାଖରେ ତୁ ରଖିଥା' ।''ଡ଼େଣା ଝାଡୁଝାଡୁ ଗୁଣୁ ଗୁଣୁ ହୋଇ ମହୁମାଛି କହିଲା- ''ତୋତେ ଯେତେ ବୁଝେଇଲେବି ତୋ ପ୍ରକୃତି ତୁ ଛାଡିବୁ ନାହିଁ । ତୋ ସାଙ୍ଗେ ଆସି ଅଯଥାରେ ମୁଁ ଗୁଡ଼ାଏ ସମୟ ନଷ୍ଟ କଲି । ତେଣେ କେତେ ମହୁ ସଂଗ୍ରହ କରିସାରନ୍ତେଣି । ଯା'...ଯାଆ -ତୁ ତୋ ବାଟରେ ଯାଆ; ମୁଁ ମୋ ବାଟରେ ଯାଏଁ ।''

